ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ




*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୮ ବର୍ଷ, ଦଶମ ସଂଖ୍ୟା**
**ମଇ, ୨୦୧୯**
**ବାର୍ଷିକ ମୂଲ୍ୟ--୧୪୦ ଟଙ୍କା**
**ପ୍ରତିଖଣ୍ଡ-- ୧୬ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* : **୯୮୬୧୦୬୪୮୯୧,**
**୯୭୭୬୩୨୬୫୬୩**
*email :*
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ-- ଇଂ. ସୁଧୀର ମଲ୍ଲିକ, ଜୟନାରାୟଣ ମହାପାତ୍ର, ସୁଭଦ୍ରା ବେହେରା, ରବି ନାରାୟଣ ମହାପାତ୍ର, ପ୍ରଭାତ କୁମାର ନନ୍ଦ ।

## ଗଳ୍ପ ଓ ଜୀବନୀ



## କବିତା



## ଜ୍ଞାନବିଜ୍ଞାନ



## ମନୋରଞ୍ଜନ

## ଚିଠି ମୁଣି



**ଆନନ୍ଦପୁର, କେନ୍ଦୁଝରରୁ ଶ୍ରୀ ରବୀନ୍ଦ୍ର ପ୍ରସାଦ ଚାନ୍ଦ–** ଅପ୍ରେଲ ମାସର ପ୍ରତିଟି ବିଷୟ ମନଛୁଆଁ । ଭାବିଦେଖନ୍ତୁର ବିଷୟବସ୍ତୁ ଏକ ଅବସ୍ଥା ମାତ୍ର । ମିଛକଥା ନୁହେଁ ! ଧ୍ୟାନସ୍ଥ ହେଲେ ସବୁ ଜାଣିହେବ । କେବଳ ଯୋଗ୍ୟତା / ପାତ୍ରତା ଆବଶ୍ୟକ ।

କୁହେ ସଂସାର
ମୋ ପିଠିରେ ବସ ପାରି କରିଦେବ ଭବସାଗର ।



**ବିଶେଷ ସୂଚନା––** ଜାନୁୟାରୀ-୨୦୧୯ ଠାରୁ **'ସଂସାର'ର ଖଣ୍ଡ ପ୍ରତି ମୂଲ୍ୟ ଟ୧୬/- ଏବଂ ବାର୍ଷିକ ମୂଲ୍ୟ ଟ ୧୪୦ । ପତ୍ରିକା ମଗାଇବା ପାଇଁ ବାର୍ଷିକ ଦେୟ ୧୪୦ ଟଙ୍କା ନିମ୍ନ ପ୍ରକାରେ ପଠାଇପାରିବେ ।**

**୧)** ପୋଷ୍ଟାଲ୍ ମନିଅର୍ଡ଼ର ଦ୍ୱାରା– 'ସଂସାର', ତଳତେଲେଙ୍ଗା ବଜାର, କଟକ-୭୫୩୦୦୯

**୨)** ବ୍ୟାଙ୍କ ଜମା ଖାତାକୁ ଟ୍ରାନ୍ସଫର୍ ଦ୍ୱାରା– S.B.I. Jhanjirimangala, Cuttack. SANSAR A/c No.10078640094, IFS Code SBIN0007050

ପତ୍ରିକା ପଠାଇବା ପାଇଁ ଆପଣଙ୍କ ନାମ ଓ ଠିକଣା ଚିଠି କିଂବା ଫୋନ୍ / ହ୍ୱାଟ୍‌ସ୍‌ଆପ୍ ଯୋଗେ ୯୭୭୬୩୨୬୫୬୩ ନମ୍ବରକୁ ଜଣାଇବାକୁ ହେବ ।

## ଅଭିନନ୍ଦନ

ମଇ ଦିବସ ଅବସରରେ ଆମ ରାଜ୍ୟର ଶ୍ରମିକ ଭାଇଭଉଣୀମାନଙ୍କୁ ହାର୍ଦିକ ଅଭିନନ୍ଦନ ଜଣାଇବା ସହିତ ସେମାନଙ୍କର କର୍ମମୟ ଜୀବନ ଦେଶ ଓ ରାଜ୍ୟର ଉନ୍ନତିରେ ବ୍ୟୟିତ ହେଉ– ଏତିକି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

### ଏ ମାସର ପ୍ରଚ୍ଛଦ

### ସ୍ୱାମୀନାରାୟଣ ହିନ୍ଦୁ ମନ୍ଦିର

ଆବୁଧାବିର ଆଲରାହ୍‌ବାର ଶେଖ୍ ଜାଏଦ୍ ହାଇୱେ ନିକଟରେ ଏକ ହିନ୍ଦୁ ମନ୍ଦିରର ପରିକଳ୍ପନା କରି ଭାରତର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦୀ ଏହାର ଶିଳାନ୍ୟାସ ଅପ୍ରେଲ ୨୦ ତାରିଖରେ କରିବେ ବୋଲି ଆବୁଧାବିରେ ଘୋଷଣା କଲେ ।

ଏହା ପୂର୍ବରୁ ୨୦୧୫ ମସିହାରେ ଆବୁଧାବି ଗସ୍ତ ସମୟରେ ସେ ଏହାର ପରିକଳ୍ପନା କରିଥିଲେ । ଏହି ଶିଳାନ୍ୟାସ ଉତ୍ସବରେ ଭାରତୀୟ ପୁରୋହିତମାନେ ମନ୍ତ୍ରୋଚ୍ଚାରଣ ପୂର୍ବକ ଦୁଇଘଣ୍ଟାର କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି ଏବଂ ୨୦୦୦ଲୋକଙ୍କର ସମାବେଶ ହେଲା ଭଳି ଏକ ବିରାଟକାୟ ତମ୍ବୁର ବ୍ୟବସ୍ଥା କରାଯାଇଛି । ଏହି ମନ୍ଦିର ତିଆରି ପାଇଁ ୧୦.୯ଏକର ପରିମିତ ସ୍ଥାନ ସ୍ଥିର କରାଯାଇଛି । ଯେଉଁ ଶିଳା ଏଥିରେ ବ୍ୟବହୃତ ହେବ, ତାହା ରାଜସ୍ଥାନରୁ ଆବୁଧାବିକୁ ଅଣାଯିବ ।

ଭାରତୀୟ ଶିଳ୍ପୀମାନେ ମୟୂର, ବୃକ୍ଷ, ଫୁଲ, ହାତୀ ଇତ୍ୟାଦି ପଥରରେ ଖୋଦେଇ କରି ନିର୍ମାଣ କରିବେ, ଯାହା ପରମୁହୂର୍ତ୍ତରେ ଏହି ମନ୍ଦିରରେ ବ୍ୟବହୃତ ହେବ ।

ସୌଜନ୍ୟ–**ଶୈଳବାଳା ମହାପାତ୍ର**

# ଯାହାକୁ ରଖିବେ ଅନନ୍ତ

ଶ୍ରୀମତୀ ଶରତ କୁମାରୀ ସ୍ୱାଇଁ

ପାହାଡ଼ ତଳି ଶାଗୁଆ ଘାସ ପଡ଼ିଆରେ ସକାଳ ପହର ଏପଟ ସେପଟ ଧାଁ-ଦଉଡ଼ କରି ହାଲିଆ ହୋଇଗଲାଣି ମୁନିଆଁ । ସଅଁ ସଅଁ ନିଶ୍ୱାସ ବାହାରୁଛି ନାକରୁ । ଶେଷରେ ସେ ଚାରି କାତ ମେଲାଇ ଶୋଇଗଲା କଅଁଳ ଛନଛନ ନରମ ଘାସ ଗାଲିଚା ଉପରେ । ଆଗରୁ କେବେ ଭଲ ଭାବେ ଦେଖି ନ ଥିବା ମେଘଧୂଆ ନୀଳ ଆକାଶଟାକୁ ନିରେଖି ଦେଖିବାକୁ ତାକୁ ଭାରି ଭଲଲାଗିଲା । ଢୁ ଢୁ ପାଣି ଓଜାଡ଼ି ଦେବାପରେ ମେଘ ଖଣ୍ଡଗୁଡ଼ା ମେଞ୍ଚେ ତୁଳା ପରି ଆକାଶର ଏ ମୁଣ୍ଡ ସେ ମୁଣ୍ଡ ହେଉଛନ୍ତି କ'ଣ ପାଇଁ ? ଧଳା ଧଳା ବଉଦ ଉପରେ ବସି ସାରା ଆକାଶଟାକୁ ବୁଲିଆସନ୍ତା କି ମୁନିଆଁ ! ତାକୁ ଭାରି ମଜା ଲାଗନ୍ତା । ହେଲେ କେମିତି ଯିବ ? ମା'ଟା ତ ସବୁବେଳେ ନଜର ରଖିଛି ତାକୁ । କହୁଛି, 'ସେ ଛୋଟପିଲା, ପଥର ଗୁମ୍ଫାରୁ ଜମା ପଦାକୁ ବାହାରିବ ନାହିଁ । ଗୋଡ଼େ ଗୋଡ଼େ ଆକଟ । ଗୁମ୍ଫା ଛାଡ଼ି ଦୂରକୁ ଗଲେ ମହାବିପଦ । ବଳୁଆ ହିଂସ୍ର ପଶୁଗୁଡ଼ା ଦୟାମାୟା ରଖିବେ ନାହିଁ । ନିବଳୁଆ ଭାଲୁଛୁଆଟାକୁ ଦେଖି ଝାମ୍ପି ପଡ଼ିବେ ଆଉ ତା'ର କଅଁଳ ମାଂସକୁ ଟିକ୍‌ଟିକ୍ କରି ଭିଣି ଖାଇଯିବେ ।'

ସବୁଦିନ ମା'ର ଏମିତି କଥା ଶୁଣି ମୁନିଆଁ ଦିନେ ପଚାରିଲା— 'ଇଏ କେମିତିକା କଥା କିଲୋ ମା' ! ସେମାନେ କ'ଣ ବଳୁଆ ବୋଲି ଯାହା ଇଚ୍ଛା ତାହା କରିବେ ? ତାଙ୍କର ଅନ୍ୟାୟ ଅନୀତି କାମରେ ତାଙ୍କୁ କ'ଣ କେହି ବାଧା ଦେବେ ନାହିଁ କି ବାରଣ କରିବେ ନାହିଁ ?' ପୁଅ ଦେହରେ ଆଦରରେ ମୁହଁ ଘଷୁ ଘଷୁ ମା' ଭାଲୁ କହିଲା— 'ବାଧା ଦିଅନ୍ତିରେ ବାପ ! ହେଲେ ଯିଏ ଏମାନଙ୍କୁ ବାରଣ କରନ୍ତି, ସେ ବହୁତ ଦୂରରେ ଥାଆନ୍ତି । ବହୁତ ଉଚ୍ଚରେ ଆକାଶ ଦେଶରେ ବିପଦରେ ପଡ଼ି ବିକଳ ହୋଇ ତାଙ୍କୁ ଡାକିଲେ ସେ ଶୁଣନ୍ତି, ହେଲେ..' ଚଟ୍ କରି ମା' ପାଟିରୁ କଥା ଛଡ଼େଇ ମୁନିଆଁ ପଚାରିଲା— 'ହେଲେ କ'ଣ ମା ?' ମା କହିଲା— ଯାହାର ଡାକ ତାଙ୍କ କାନରେ ବାଜେ, ସେ ତାକୁ ଉଦ୍ଧାର କରନ୍ତି । ନାନା ରୂପରେ ସିଏ ଆସନ୍ତି । କାମ ସରିଗଲେ ପୁଣି ତାଙ୍କ ନିଜ ଜାଗାକୁ ଫେରିଯାଆନ୍ତି । ମା' କଥାକୁ ବୁଝିଗଲା ଭଳି ମୁଣ୍ଡ ଟୁଙ୍ଗାରି ଦେଇଥିଲା ମୁନିଆଁ ।

ହେଲେ ଆଜି ସାହସ କରି ଗୁମ୍ଫା ଭିତରୁ ବାହାରକୁ ବାହାରିଆସିଛି ମୁନିଆଁ । ପାହାନ୍ତି ତାରା ବୁଡୁ ନ ବୁଡୁଣୁ ମାଆଟା ବାହାରିଯାଇଛି ଖାଇବା ଆଣିବାକୁ । ପାହାଡ଼ ଉପରେ ବୁଢ଼ା ବରଗଛ କୋରଡ଼ରେ କୁଆଡ଼େ ବଡ଼ ମହୁଫେଣାଟାଏ ଓହଳିଛି । ମା' ଆଣିବ ତା' ପାଇଁ । ଆଗରୁ ଥରେଅଧେ ମହୁ ଚାଖିଛି ମୁନିଆଁ । ଭାରି ମିଠା । ମହୁର ସ୍ୱାଦ ମନେପଡ଼ି ପାଟିରୁ ତା'ର ଠପ୍‌ଠପ୍ ଲାଳ ଗଳି ପଡ଼ିଲା । ଓଠ ଚାରିପଟେ ଜିଭ ବୁଲାଇଆଣି ମୁନିଆଁ ମନେ ମନେ ଭାବିଲା— ଆଉ କିଛି ସମୟ ଏଠି ଖେଳାଖେଳି କରି ମା' ଫେରିବା ଆଗରୁ ଗୁମ୍ଫାକୁ ଫେରିଯିବ । ମା' ଜମା ଜାଣିପାରିବ ନାହିଁ ସିଏ ଗୁମ୍ଫା ବାହାରକୁ ଆସିଛି ବୋଲି ।

ସହଜେ ତ ଶରତର ଶିଶିରଭିଜା ସକାଳ । ଦେହରେ ଘଡ଼ିକି ଘଡ଼ି ଶୀତଳ ପବନ ନେସି ହୋଇଯାଉଥାଏ । ପୁଣି ନାଲି ସୂରୁଯର ସୁନେଲି ଖରା ଧୀରେ ଧୀରେ ଟାଣ ହୋଇ ମୁନିଆଁ ଦେହକୁ ଉଷୁମ କରି ଦେଉଥାଏ । ଏପଟସେପଟ କଡ଼ ଲେଉଟାଇ ମୁନିଆଁ ଆଖିବୁଜି ଦେଉଥିଲା । ଠିକ୍ ଏତିକିବେଳେ ତାକୁ ପାହାଡ଼

ତଳି ବୁଦା ଉହାଡ଼ରୁ ଖସ୍‌ଖାସ୍ ଶବ୍ଦ ଶୁଣାଗଲା । ଚଟ୍ କରି ଉଠିପଡ଼ି ଚାହିଁଦେଲା ସେ ଆଡ଼େ ।

ଆଖି ତା'ର ଖୋସି ହୋଇଗଲା । କଲିଜା ପାଣି ଫାଟିଗଲା ଭଳି ଲାଗିଲା । କ'ଣ କରିବ ? ଯିବ କୁଆଡ଼େ ? ଏ ବିରାଟ ବଡ଼ ମହାବଳ ବାଘ କବଳରୁ ବଞ୍ଚିବ କେମିତି ? ମୁନିଆଁକୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ । ମା'ର ମୁହଁଟା ଖାଲି ଆଖି ଆଗରେ ନାଚିଯାଉଥାଏ । ମା'ର କଥା ନ ମାନି ସେ କେଡ଼େ ଭୁଲଟାଏ କରି ପକେଇଲା ! କିଛି ଉପାୟ ନ ପାଇ 'ରକ୍ଷାକର ରକ୍ଷାକର' ବୋଲି ରଡ଼ି ଛାଡ଼ି ଅକ୍ଲାନ୍ତିଆ ଦୌଡ଼ୁଥାଏ ଆଗକୁ । ପାହାଡ଼, ଝରଣା, କଣ୍ଟାବୁଦା କିଛି ମାନୁ ନ ଥାଏ ସିଏ, ଅଣନିଶ୍ୱାସୀ ହୋଇ ଧାଉଁଥାଏ ।

ମହାବଳ କୋଉ ଛାଡ଼ିବ ତାକୁ । ଘାଉଁ ଘାଉଁ ରଡ଼ି କରି କୁଦା ମାରି ଦଉଡ଼ୁଥାଏ ମୁନିଆଁ ପଛରେ । ମୁନିଆଁ ଦଉଡ଼ୁଥାଏ ଅତର୍ଛା । ମଝିରେ ମଝିରେ ବୁଲିପଡ଼ି ପଛକୁ ଚାହିଁଦେଉଥାଏ । ପୁଣି ଧାଉଁଥାଏ ପ୍ରାଣମୂର୍ଚ୍ଛା । ଶେଷକୁ କିଛି କୁଆଡ଼ୁ ଉପାୟ ନ ପାଇ ବିକଳରେ ଝରଣା ଉପରେ ଶୋଇଯାଇଥିବା ଥୁଣ୍ଟା ଜାମୁଗଛ ଉପରକୁ ଚଢ଼ିଗଲା ମୁନିଆଁ । ହେଲେ ଡାଳ ଉପରୁ ତଳକୁ ଚାହିଁ ଦେଇ ଡରିଗଲା ସିଏ । ଭଉଁରି କାଟି ସୁଅ ପେଲୁଛି ଝରଣା ପାଣି । ଦେହ ଥରିଗଲା ତା'ର । ବିକଳରେ ଡକାପାରିଲା– 'ମା, ମା'ଲୋ, ମୋତେ ମହାବଳ ମାରି ଖାଇଦେବ । ମାଆ ଲୋ ମାଆ ମୋତେ ବଞ୍ଚା ।'

ମୁନିଆଁ ପାଟିରୁ କଥା ସରିନାହିଁ, ଦେଖିଲା ବେଳକୁ ବାଘଟା ସେଇ ଜାମୁ ଗଛକୁ ଚଢ଼ି ଆସିଲା । ନିମିଷକରେ ଆଖି ତରାଟି ନିଶ ଫୁଲାଇ ଲାଙ୍ଗୁଡ଼ ଛାଟି ପତଳା ଲହ ଲହ ଜିଭଟା କାଢ଼ି ଓଠ ଚାଟିଲା । ପାଦ ପାଦ କରି ଆଗକୁ ବଢ଼ିଲା । ଭାଲୁଛୁଆ ମୁନିଆଁ ଭୟରେ ପଛକୁ ପଛକୁ ଯାଉଥାଏ । ହଠାତ୍ ଗୋଡ଼ ଖସିଗଲା ମୁନିଆଁର । ଝରଣା



ପାଣିରେ ଖସି ପଡୁଥିବାବେଳେ ଶୁଖିଲା ଜାମୁଡାଳଟା ବି ତା'ର ଭାର ସହି ନ ପାରି ଅଧାରୁ ମଡ଼ କରି ଭାଙ୍ଗିପଡ଼ିଲା ମୁନିଆଁ ସହ । ଉପରେ ଥାଇ ମହାବଳ ରାଗରେ ଖାଲି ଗର୍ଜନ କରୁଥାଏ । ଏଣେ ମୁନିଆଁ ଆକୁଳରେ ଭାସିଯାଉଥିବା ଡାଳଟାକୁ ଜାବୁଡ଼ି ଧରି ଭାସିଯାଉଥାଏ ତଳକୁ ତଳକୁ ।

ମହାବଳ ତ ଭାରି ଚାଲାଖ । ମୁନିଆଁର ଗତିବିଧିକୁ ଲକ୍ଷ୍ୟ କରି ଗଛରୁ ଓହ୍ଲାଇ ଝରଣା କୂଳେ କୂଳେ ଧାଇଁଲା ଝରଣାର ତଳ ମୁଣ୍ଡଆଡ଼େ । ଭାଲୁଛୁଆ ଭାସି ଭାସି ଯାଇ କେଉଁଠି ଲାଗିବ, ସେ କଥାକୁ ଅନୁମାନ କରିନେଲା ମହାବଳ । କୁଦାମାରି ଝରଣା ଭିତରେ ଥିବା ବଡ଼ ପଥର ମୁଣ୍ଡାଟା ଉପରେ ଯାଇ ବସିପଡ଼ିଲା ମଜଭୁତ୍ ହୋଇ । ରାଗରେ ଦାନ୍ତ କଡ଼ମଡ଼ କରି ନିଜେ ନିଜେ କହି ହେଉଥାଏ– 'ଏଡ଼େ ବକଟେ ଛୁଆ, ଦେଖ ତା ବହପ ! ଯେମିତି ହେଉ ଆଜି ତାକୁ ମାରି ଖାଇବି ।' ପାଣି ସୁଅରେ ଭାସି ଭାସି ପାଖେଇ ଆସୁଥିବା ମୁନିଆଁକୁ ଦେଖି କହିଲା–

'ଆ.. ଆ.. ମୋ ପାଖକୁ ।' ସତକୁ ସତ ଡାଳଟା ଭାସି ଭାସି ଯାଇ ସେଇ ପଥର ଗଦାଟା ପାଖରେ ଲାଗିଗଲା । ହଡ଼ବଡ଼େଇ ଗଲା ମୁନିଆଁ । ବାଟ ପାଇଲାନି କୁଆଡ଼େ ଯିବ, ଡେଇଁପଡ଼ିଲା ପାଣିକୁ, ପହଁରି ପହଁରି ଯାଇ ଗୋଟାଏ ବଡ଼ ମୁଣ୍ଡିଆ ପଥର ଉପରକୁ ଉଠିଗଲା । ତେଣେ ବାଘ ରାଗରେ ହେଣ୍ଟାଳି ହେଣ୍ଟାଳି କୁଦା ମାରିଲା ତା' ଉପରକୁ । ଭାଗ୍ୟ ଭଲ ମୁନିଆଁ ଠିଆ ହୋଇଥିବା ପଥର ଉପରେ ନ ପଡ଼ି ବାଘ ଟିକିଏ ଦୂରରେ ଥିବା ଆଉ ଗୋଟିଏ ପଥର ଉପରେ ପଡ଼ିଲା । ଲାଞ୍ଜ ପିଟିଲା ରାଗରେ, ଝିଙ୍କି ହୋଇ ରାମ୍ପୁଡ଼ି ପକାଇଲା ମୁନିଆଁ ମୁହଁକୁ । ରଡ଼ି ଛାଡୁଥାଏ ମୁନିଆଁ ।

ପୁଅର ଏ କାନଫଟା ରଡ଼ି ଶୁଣି ଝପଟିଆସିଲା ମା' ଭାଲୁ । ମୁହଁରେ ଧରିଥିବା ମହୁଫେଣାଟା ଖସିପଡ଼ିଲା । ତା' ସାଙ୍ଗ ବଣମଇଁଷି କେତେଟା ବି ଆଗକୁ ମାଡ଼ିଆସିଲେ ରାଗରେ ଗର୍ଜନ କରି । ସେମାନଙ୍କୁ ଦେଖି ମୁନିଆଁର ସାହସ ବଢ଼ିଗଲା । ଖଙ୍କାରି ହୋଇ ବାଘକୁ କହିଲା– 'ରହ.. ରହ... ମୋ ମାଆ ଆସିଗଲାଣି, ତୋ ତଣ୍ଟି ଫୁଟାଇ କଣା କରିଦେବ । ଯିବୁ କୁଆଡ଼େ ?'



ବାଘ ଦେଖିଲା ଶିକାରଟା ହାତଛଡ଼ା ହୋଇଗଲା । ଛାର ଭାଲୁଛୁଆଟା କ'ଣ ତାକୁ ବଳେଇ ଯାଇଥାନ୍ତା; ହେଲେ ଏ ବଣ ମଇଁଷିଗୁଡ଼ା କୁଆଡୁ ଆସିଗଲେ ? ପଛକୁ ବୁଲିପଡ଼ି ଡିଆଁଟାଏ ମାରି ଆଖିପିଛୁଳାକେ ମହାବଳ କୁଆଡ଼େ ଜଙ୍ଗଲ ଭିତରେ ଲୁଚିଗଲା ।

ମା' ଭାଲୁ ରାଗରେ ଖାଲି ଥରୁଥାଏ । ମୁନିଆଁକୁ ବହୁତ ଗାଳିଦେଲା । ଗୁମ୍ଫା ଛାଡ଼ି କାହିଁକି ବାହାରକୁ ଆସିଲା ବୋଲି ଧମକେଇଲା । ଅପରାଧୀଟିଏ ଭଳି ମୁହଁ ଶୁଖେଇ ମୁନିଆଁ ଠିଆ ହୋଇଥାଏ । ଆଉ କେବେ ଏମିତି ଭୁଲ କରିବ ନାହିଁ, ମାଆ କଥା ସବୁବେଳେ ମାନିବ ବୋଲି କହିଲା ।

ପୁଅ କଥାରେ ମା'ର ମନ ତରଳିଗଲା । ଝାଡ଼ିଝୁଡ଼ି ପୁଅକୁ ଟେକିନେଲା ଉପରକୁ । ଲହୁଲୁହାଣ ମୁହଁଟାକୁ ଚାଟିଚୁଟି ସଫା କଲା । ମା' କୋଳରେ ମୁଣ୍ଡ ରଖି ମହୁଫେଣାଟିକୁ ଖାଉ ଖାଉ ମୁନିଆଁ କହିଲା– 'ମା'ଲୋ ମୋତେ ଆଜି ବାଘ ଖାଇ ଦେଇଥାନ୍ତା ।' ପୁଅ ପାଟିରେ ହାତ ଦେଇ ମା' ଭାଲୁ କହିଲା– ସେମିତି କଥା କହ ନାହିଁରେ ଧନ, କଥାରେ ପରା ଅଛି–

''ଯାହାକୁ ରଖିବେ ଅନନ୍ତ
କି କରି ପାରେ ବଳବନ୍ତ ।''

*୫୫୪/୧୯୬୫, ଶ୍ରୀବିହାର, ପଟିଆ, ଭୁବନେଶ୍ୱର-୩୧*



# ସେ ମଧ୍ୟ ବଇରୀ

ଶ୍ରୀ ଆନନ୍ଦ କୁମାର ମେହେର

ଏକା ସେହି ନୁହେଁ ବଇରୀ ଥାଏ ଦେଶ ବାହାରେ
ସୀମା ସେପାରିରୁ ଆମକୁ ଧ୍ୱଂସେ ବୋମା ପ୍ରହାରେ ।
ଲୁଚିଛପି ପୁଣି ପଶଇ ଆମ ଶାନ୍ତିର ଦେଶେ,
ନିଷ୍ପାପ ଜନଙ୍କୁ ମାରଇ ଯମଦୂତର ବେଶେ ।୧।



ସେ ମଧ୍ୟ ଆମର ଅଇରି କରି ଯେ ସୁରା ପାନ
ଗହଳି ରାସ୍ତାର ମଧ୍ୟରେ କ୍ଷିପ୍ରେ ଚଳାଏ ଯାନ ।
ହରିନିଏ ପ୍ରାଣ ନିରୀହ ବୃଦ୍ଧ ଶିଶୁ କୁମାର
ହସଖୁସି ଭରା ସଂସାର କରେ ସେ ନାରଖାର ।୨।



ସେ ମଧ୍ୟ ଦେଶର ବଇରୀ ସମାଜର ଦୂଷଣ
କର୍ଣ୍ଣଫଟା ଉଚ୍ଚ ଶବଦେ ବଜାଏ କଳଗାନ ।
ବୃଦ୍ଧ, ଯୁବା, ରୋଗୀ ବିଦ୍ୟାର୍ଥୀ ଲଭିଥାନ୍ତି କଷଣ
ଶାନ୍ତ ଶିଷ୍ଟ ବାତାବରଣ କଳୁଷେ ଅକାରଣ ।୩।



ସେ ମଧ୍ୟ ଜାତିର ଅରାତି ଥାଏ ଉଚ୍ଚ ପଦରେ
ଉତ୍କୋଚ ଘେନଇ ନିର୍ଲଜ୍ଜ ଛାର ଧନ ଲୋଭରେ ।
ଲୋକଙ୍କୁ କରଇ ସର୍ବଦା ବୃଥାରେ ହଇରାଣ
ଲାଞ୍ଚବିନା କାମ କରେନି ପକାଇ ଶତରାଣ ।୪।



ସେ ମଧ୍ୟ ସମାଜେ କୃତଘ୍ନ କରେ ଅପମିଶ୍ରଣ
ଫଳମୂଳ କରେ ସୁନ୍ଦର ଲଗାଇ ରସାୟନ ।
ବିଷାକ୍ତ ଦ୍ରବ୍ୟର ପ୍ରଭାବେ ଦୁରାରୋଗ୍ୟ ପୀଡ଼ନ
ଅକାଳରେ ଝଡ଼ିପଡ଼ଇ ମୂଲ୍ୟବାନ ଜୀବନ ।୫।

ହୁଅ ସଚେତନ ସକ୍ଷମ ଆହେ ମୋ ଦେଶବାସୀ
ଐକ୍ୟ ସଦଭାବ ବଳରେ ଯାଅ ଅରାତି ନାଶି ।
ଦୁରାଚାର, ମିଥ୍ୟା, ଅନ୍ୟାୟ ହେବେ ନରକବାସୀ
ରାମରାଜ୍ୟ ହସି ଉଠିବ ପୁଣି ସରଗୁ ଆସି ।୬।

*ଅଧ୍ୟାପକ, ପଦାର୍ଥବିଜ୍ଞାନ, ପୋ-ଆଗଲପୁର,*
*ବଲାଙ୍ଗିର-୭୬୭୦୨୨*

# ବର୍ଜ୍ୟ ପଲିଥିନ୍

ଶ୍ରୀ ରାମଚନ୍ଦ୍ର ସାହୁ

ଆମ ଦେଶରେ ପଲିଥିନ୍ ବା ପ୍ଲାଷ୍ଟିକ୍‌ର ବ୍ୟବହାର ଯେତିକି ଯେତିକି ବୃଦ୍ଧି ଘଟୁଛି, ସେତିକି ସେତିକି ସମସ୍ୟା ସୃଷ୍ଟି ହେଉଛି । ତେଣୁ ଏହାର ବ୍ୟବହାରକୁ ନିଷିଦ୍ଧ କରିବା ପାଇଁ ଆବଶ୍ୟକ ପଡ଼ିଲାଣି । ପରିବେଶ ଆଇନ୍ ବା ପ୍ଲାଷ୍ଟିକ୍ ପରିଚାଳନା ନିୟମ ଏହାକୁ ନିୟନ୍ତ୍ରଣ କରିପାରିବ ନାହିଁ । ପ୍ରଦୂଷଣ ନିୟନ୍ତ୍ରଣ ଆୟୋଗ ଏହି କାର୍ଯ୍ୟ ପାଇଁ ନୂତନ ଆଇନ୍ ତିଆରି କରିବା ଦରକାର ପଡୁଛି ।

ଓଡ଼ିଶାର ଜନସଂଖ୍ୟା ଚାରିକୋଟି ୨୦ ଲକ୍ଷ । ପର୍ଯ୍ୟବେକ୍ଷଣରୁ ଜଣାଯାଉଛି– ଓଡ଼ିଶାବାସୀ ଦୈନିକ ୧୫୬୫ ଟନ୍ ବର୍ଜ୍ୟ ପ୍ଲାଷ୍ଟିକ ପରିବେଶକୁ ଫୋପାଡୁଛନ୍ତି । ଏହାଦ୍ୱାରା ପରିବେଶ ଦୂଷିତ ହେଉଛି ଏବଂ ଜଳ, ପବନ ଏବଂ ମାଟି ବିଷାକ୍ତ ହେଉଛି । ଏହି ବର୍ଜ୍ୟବସ୍ତୁର କ୍ଷତିକାରୀ ଗୁଣ ସମ୍ପର୍କରେ ଆମେ ଜ୍ଞାତ ଥିଲେ ମଧ୍ୟ ପ୍ରତିକାର କରୁନାହୁଁ ।

ପଲିଥିନ୍ ବା ପ୍ଲାଷ୍ଟିକ ମାଟିରେ ମିଶେନାହିଁ । ମାଟିକୁ ଢାଙ୍କିରଖେ । ଏହାଫଳରେ ମାଟି ଭିତରକୁ ଜଳ ଭେଦିପାରେ ନାହିଁ । ତେଣୁ ମାଟିର ଉର୍ବର ଶକ୍ତିବୃଦ୍ଧିରେ ପଲିଥିନ୍ ଅନ୍ତରାୟ ସୃଷ୍ଟି କରିଥାଏ । କେତେକ ଅଜ୍ଞ ବ୍ୟକ୍ତି ପଲିଥିନ୍‌କୁ ଠୁଳକରି ପୋଡ଼ିଦିଅନ୍ତି । ଏହା ଅଧିକ ବିପଦ ସୃଷ୍ଟି କରିଥାଏ । ଅଗ୍ନି ସଂଯୋଗ ଦ୍ୱାରା ସେଥିରୁ ଡାଇ-ଅକ୍‌ସିନ୍, ଫ୍ୟୁରାନ୍ ନାମକ ବିଷାକ୍ତ ବାଷ୍ପ ନିର୍ଗତ ହୋଇଥାଏ । ଏମାନେ ବାୟୁମଣ୍ଡଳକୁ ପ୍ରଦୂଷିତ କରିଥାନ୍ତି ।

ଆମ ରାଜ୍ୟର ରାଜଧାନୀ ଭୁବନେଶ୍ୱରଠାରେ ପଲିଥିନ୍ ବର୍ଜ୍ୟବସ୍ତୁ ବହୁଳ ଭାବରେ ଦେଖିବାକୁ ମିଳେ । ମନେହୁଏ, ସତେଯେପରି ରାଜଧାନୀବାସୀ ପ୍ଲାଷ୍ଟିକର ଫାଶ ମଧ୍ୟରେ ଛନ୍ଦି ହୋଇଯାଇଛନ୍ତି । ଏହାର କୁପରିଣାମକୁ ସେମାନେ ଉପଲବ୍ଧି କରିପାରୁନାହାନ୍ତି ।

ପୁରୀ ସହରର ଏକ ଘଟଣା ସମ୍ପର୍କରେ ଅବଗତ ହେଲେ ପ୍ଲାଷ୍ଟିକର କୁପରିଣାମ ସମ୍ପର୍କରେ ସମସ୍ତଙ୍କର ଚକ୍ଷୁ ଖୋଲିଯିବ । ଖାଦ୍ୟ ଲାଗିଥିବା ପଲିଥିନ୍ ପୁରୀ ସହରରେ ପଡ଼ିଥିଲା । ବୁଲା ଷଣ୍ଢଟିଏ ସେହି ଖାଦ୍ୟଯୁକ୍ତ ପଲିଥିନ୍‌କୁ ଖାଇଦେଲା । ସୁସ୍ଥସବଳ ଷଣ୍ଢଟି ତାହାପରେ ଅସୁସ୍ଥ ହୋଇପଡ଼ିଲା । ପେଟରେ ଯନ୍ତ୍ରଣା ଅନୁଭବ କରିବାରୁ ସେ ଗୋଟିଏ ଜାଗାରେ ଶୋଇରହିଲା । କିଛିଦିନ ପରେ ଷଣ୍ଢଟିର ମୃତ୍ୟୁ ହେଲା । କେତେଜଣ ସଚେତନ ନାଗରିକ ଷଣ୍ଢଟିର ମୃତ୍ୟୁର କାରଣ ଜାଣିବାକୁ ଇଚ୍ଛାକଲେ । ଶେଷରେ ପଶୁ ଚିକିତ୍ସକ ଅସ୍ତ୍ରୋପଚାର କଲେ । ଷଣ୍ଢଟିର ପେଟରୁ ମେଞ୍ଚାଏ ପଲିଥିନ୍ ବାହାରିଲା, ଯାହା ଆଦୌ ଜୀର୍ଣ୍ଣ ହୋଇପାରି ନଥିଲା ।

ଦ୍ୱିତୀୟ ଘଟଣା ଆମ ନିଜ ଘରର ଘଟଣା । ଏହା ମଧ୍ୟ ସମସ୍ତଙ୍କ ହୃଦ୍‌ବୋଧ ହେବା ଉଚିତ୍ । ଆମ ଘରେ ପୋଷା ବିରାଡ଼ିଟିଏ ଥିଲା । ପରିବାରର ସମସ୍ତଙ୍କର ସ୍ନେହଶ୍ରଦ୍ଧାର ପାତ୍ର ଥିଲା ବିରାଡ଼ିଟି । ଦିନେ ସେ

ଶୋଇରହିଲା ଯେ ଆଉ ଉଠିଲା ନାହିଁ । କ୍ରମେ କ୍ରମେ ସାଂଘାତିକ ଅବସ୍ଥାକୁ ସେ ଆସିଲା । ମୁଁ ଏହାର କାରଣ ଜାଣିପାରିଲି ନାହିଁ ।

କିଛି ସମୟ ପରେ ଦେଖିଲି ବିରାଡ଼ିଟିର ମଳଦ୍ୱାରରେ କଳାରଙ୍ଗର କ'ଣ ଗୋଟାଏ ଦେଖାଯାଉଛି । ହାତରେ ଗ୍ଲୋଭ ଲଗାଇ ସେଇଟିକୁ ଧୀରେ ଧୀରେ ଟାଣିଆଣିଲି । ସେଇଟିଥିଲା ଏକ କଳାରଙ୍ଗର ପଲିଥିନ୍, ଯାହାକି ତା ପେଟରେ ଆଦୌ ଜୀର୍ଣ୍ଣ ହୋଇପାରି ନ ଥିଲା । ବିଲେଇଟି ସେଥିରୁ ରକ୍ଷାପାଇଗଲା । ଆହୁରି ଅନେକ ଦିନ ବଞ୍ଚିରହିଲା ।

ପରୀକ୍ଷଣରୁ ଜଣାଯାଇଛି ଯେ ପଲିଥିନ୍ ବା ପ୍ଲାଷ୍ଟିକ୍‌ପୂର୍ଣ୍ଣ ଅଞ୍ଚଳରେ ଘାସଜାତୀୟ ଉଦ୍ଭିଦ ତିଷ୍ଠି ରହିପାରୁନାହିଁ । ଏହାର ବ୍ୟବହାର ଯୋଗୁଁ ସାମୁଦ୍ରିକ ଜୀବ ମଧ୍ୟ ମୃତ୍ୟୁବରଣ କରୁଛନ୍ତି । ମାନନୀୟ ସୁପ୍ରିମ କୋର୍ଟ ବିଚାରପତି ସିଂଘଭି ଏବଂ ମୁଖୋପାଧ୍ୟାୟ ୨୦୧୨ ମସିହାରେ ଆଶଙ୍କା ବ୍ୟକ୍ତ କରିଛନ୍ତି ଯେ ପଲିଥିନ୍‌ର ବ୍ୟବହାର ଆଗାମୀ ପିଢ଼ି ପାଇଁ ପରମାଣୁ ବୋମାର ବିସ୍ଫୋରଣଠାରୁ ମଧ୍ୟ ଅଧିକ ଭୟଙ୍କର ହେବ ।

ସୂଚନାଯୋଗ୍ୟ ଯେ– ପ୍ଲାଷ୍ଟିକ୍ ବ୍ୟବହାରକୁ ନିୟନ୍ତ୍ରଣ କରିବା ପାଇଁ ପରିବେଶ ଦିବସରେ ଭାରତର ମାନନୀୟ ରାଷ୍ଟ୍ରପତି ଏବଂ ସମ୍ମାନନୀୟ ପ୍ରଧାନମନ୍ତ୍ରୀ ଦେଶବାସୀଙ୍କୁ ସଚେତନ କରାଇଛନ୍ତି । ଓଡ଼ିଶାର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଓଡ଼ିଶାବାସୀଙ୍କୁ ମଧ୍ୟ ପଲିଥିନ୍‌ର ଅପକାରିତା ସମ୍ପର୍କରେ ସଚେତନ କରାଇଛନ୍ତି । ଗଞ୍ଜାମ ଜିଲାର ଦୁଇଜଣ ସଚେତନ ନାଗରିକ ଏହାର ପ୍ରଚଳନକୁ ବାରଣ କରି ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଛନ୍ତି ।

ଆମ ଦେଶର ସତରଟି ରାଜ୍ୟରେ ପଲିଥିନ୍ ବ୍ୟବହାରକୁ ବାରଣ କରାଯାଇଛି । ଏହି ମହାସଙ୍କଟରୁ ରକ୍ଷା ପାଇବା ପାଇଁ ବର୍ତ୍ତମାନଠାରୁ ଆମେ ସଚେତନ ନ ହେଲେ 'ଆପଣା ହସ୍ତେ ଜିହ୍ୱା ଛେଦି, କେ ଅଛି ତା'ର ପ୍ରତିବାଦୀ'ର ଯଥାର୍ଥତା ପ୍ରମାଣିତ ହେବ ।

*ତେନ୍ତୁଳିନଣ୍ଡା, ଡମ୍ଫୋ, କେନ୍ଦୁଝର-୭୫୮୦୧୪*

---

## ଅଛି-ନାହିଁ

ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୫ଟି ପ୍ରଭେଦ ଅଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ ! *(ଉତ୍ତର ୪୨ ପୃଷ୍ଠାରେ)*



# ଭାଗ୍ୟ ଗଲା ବଦଳି

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ତାଙ୍କ ନାଆଁ ସିଲ୍‌ଭେଷ୍ଟର ଷ୍ଟାଲ୍ଲୋନ । ସେ ଥିଲେ ଜଣେ ବିଖ୍ୟାତ ସିନେମା ଅଭିନେତା । ଲକ୍ଷ ଲକ୍ଷ ଲୋକ ତାଙ୍କୁ ଭଲପାଆନ୍ତି । ଶୁଣିବ ତାଙ୍କ କଥା ? ଶୁଣିବ ତାଙ୍କ ଦୁର୍ଭାଗ୍ୟ ଏବଂ ସୌଭାଗ୍ୟର କାହାଣୀ ?

ସେ ଯେତେବେଳେ ଜନ୍ମହେଲେ, ସେତେବେଳେ ବଡ଼ ଅସୁବିଧା ଉପୁଜିଲା । ଫଳରେ ତାଙ୍କ ମୁହଁର ଗୋଟିଏ ଫାଳ ଭଲଭାବରେ କାମ କରି ନ ପାରି ଅଚଳ ହୋଇପଡ଼ିଲା । ଡାକ୍ତରୀ ଭାଷାରେ ଏହାକୁ କୁହାଯାଏ 'ମୁଖମଣ୍ଡଳର ପାରାଲିସିସ୍' । ତା'ସାଙ୍ଗକୁ ଷ୍ଟାଲ୍ଲୋନ୍‌ଙ୍କ ପରିବାର ଥିଲା ଗରିବ । ଗରିବ ପିଲା, ପୁଣି ମୁହଁର ପାରାଲିସିସ୍ । ତେଣୁ ସ୍କୁଲର ପିଲାମାନେ ତାଙ୍କୁ ଥଟ୍ଟାପରିହାସ କରି ଚିଡ଼ାଉଥିଲେ । ସେମାନଙ୍କ ହଇରାଣହରକତକୁ ସେ ସହିପାରୁ ନଥିଲେ କି କିଛି କରିପାରୁ ନ ଥିଲେ ମଧ୍ୟ । ହେଲେ ତାଙ୍କୁ ଡରେଇଥରେଇ ରଖୁଥିବା ପିଲାମାନଙ୍କୁ ଜବତ କରିବା ନିମନ୍ତେ ସେ ଆରମ୍ଭ କରିଦେଲେ କୁସ୍ତିକସରତ୍ । ସିନେମାରେ ଅଭିନୟ କରିବା ନିମନ୍ତେ ବି ମଝିରେ ମଝିରେ ତାଙ୍କର ମନ ହେଉଥିଲା ।

୧୯୭୪ ମସିହା ପାଖାପାଖି ସମୟ । ଘରେ ଗର୍ଭବତୀ ସ୍ତ୍ରୀ ଏବଂ ପୋଷା କୁକୁରଟିଏ । କୁକୁରଟିକୁ ସେ ଖୁବ୍ ଭଲପାଉଥିଲେ । ଘରେ ପଇସାର ଘୋର ଅଭାବ । ଚଳୁଥା'ନ୍ତି ଧାରଉଧାର କରି । ତଥାପି ତାଙ୍କ ମନରେ ଦୃଢ଼ ବିଶ୍ୱାସ ଥାଏ ଯେ ଭଲଦିନ ଅବଶ୍ୟ ଆସିବ । ସେ ଜଣେ ବଡ଼ ମଣିଷ ଭାବରେ ଗଣାହେବେ; ମାତ୍ର କାହିଁ ସେହି ଭଲଦିନ ? ବଢ଼ିବଢ଼ି ଚାଲିଲା ଋଣ । ଖୁବ୍ ଦୁଃଖରେ ଭାଙ୍ଗିପଡ଼ିଲେ ସେ । ମନରେ ଶାନ୍ତି ରହିଲାନି । ସବୁବେଳେ ସେ ଅନୁଭବ କଲେ ଅସ୍ଥିରତା ଓ ଉତ୍କଣ୍ଠା । ଏହାସତ୍ତ୍ୱେ ବି ତାଙ୍କ ମନରେ ଆଶା ଉଙ୍କି ମାରୁଥାଏ ଯେ ତାଙ୍କ ଭାଗ୍ୟରେ ପରିବର୍ତ୍ତନ ଘଟିବ । ସେ ଖୁବ୍ ନାଆଁ କମେଇବେ ।

ହେଲେ ଯେଉଁ କଥାକୁ ସେହିକଥା । ବଢ଼ିବଢ଼ି ଯାଉଥାଏ ଋଣ । ସ୍ତ୍ରୀଙ୍କ ଗହଣାଗାଣ୍ଠିତକ ବିକା ସରିଥାଏ । ରହିବାକୁ ଘର ନାହିଁ । ଦିନଦିନ ଧରି ସେ ଶୋଉଥାନ୍ତି ନିଉୟର୍କର ବସ୍‌ଷ୍ଟାଣ୍ଡରେ । ଅସହ୍ୟ ଶୀତ । ଦେହରେ ଗରମ ପୋଷାକ ନାହିଁ । ଦିନେ ସେ ଯାଇ ପହଞ୍ଚିଗଲେ ଗୋଟିଏ ଦୋକାନରେ ଏବଂ ମାତ୍ର ୨୫ଡଲାରରେ ବିକ୍ରି କରିଦେଲେ ନିଜର ଅତିପ୍ରିୟ କୁକୁରକୁ ।

ଦୁଇ ସପ୍ତାହ ପରର ଘଟଣା । ଟେଲିଭିଜନ୍‌ରେ ଗୋଟିଏ ମଲ୍ଲଯୁଦ୍ଧର ଦୃଶ୍ୟ ଦେଖିସାରିବା ପରେ ସେ ହଠାତ୍ ଅନୁଭବ କଲେ ଏକ ପ୍ରେରଣା । କାଗଜକଲମ ଧରି ସେ ଲେଖିବସିଲେ । ଲେଖି ଚାଲିଲେ ଦୀର୍ଘ ୨୦ଘଣ୍ଟାଧରି । ସେ ଯେଉଁ ଲେଖା ବା ପାଣ୍ଡୁଲିପିଟି ୨୦ଘଣ୍ଟା ଭିତରେ ଲେଖି ପକେଇଥିଲେ, ତାହା 'ରକି' ନାମକ ଏକ ସିନେମା ଭାବରେ ହୋଇପଡ଼ିଛି ଖୁବ୍ ଲୋକପ୍ରିୟ । 'ରକି' ସିନେମାଟି ଖୁବ୍ ଜନପ୍ରିୟ ହୋଇଗଲା ! ତେବେ କ'ଣ ଥିଲା ତା'ର ଲମ୍ବା କାହାଣୀ ?

ଷ୍ଟାଲ୍ଲୋନ୍ ଲେଖିଛନ୍ତି– ମୋର ଏହି ପାଣ୍ଡୁଲିପିଟିକୁ କେହି ଆଡ଼ ଆଖିରେ ବି ଚାହିଁଲେନି । ପାଖାପାଖି ୧୫୦୦ଜାଗାରୁ ତାହା ଫେରିଆସିଲା । ଶେଷରେ ଜଣେ ପ୍ରଯୋଜକ ପାଣ୍ଡୁଲିପିଟିକୁ ୧ଲକ୍ଷ ୨୫ହଜାର ଡଲାର୍‌ରେ କିଣିବା ପାଇଁ ରାଜି ହୋଇଗଲେ ।

ଚରମ ଅଭାବ, ଅତିମାନସିକ ଯନ୍ତ୍ରଣା, ଗର୍ଭବତୀ

ସ୍ତ୍ରୀ ପ୍ରିୟ ପୋଷାକୁକୁରଟି ବିକ୍ରି– ଏହାସତ୍ତ୍ୱେ ଷ୍ଟାଲ୍ଲୋନ ସର୍ତ୍ତ ବାଢ଼ିଲେ ଯେ ସେ ହେବେ ରକି ସିନେମାର ପ୍ରଧାନ ଅଭିନେତା । ପ୍ରଧାନ ଅଭିନେତା ଅତି ସୁନ୍ଦର ହୋଇଥିବା ଦରକାର । ହେଲେ ଷ୍ଟାଲ୍ଲୋନ ଜଣେ ମଲ୍ଲଯୋଦ୍ଧା । ତା' ସାଙ୍ଗକୁ ମୁହଁ ପାରାଲିସିସ୍ ଯୋଗୁ ମୁହଁଟା ଅସୁନ୍ଦର । ପାରାଲିସିସ୍ ଯୋଗୁ କଥାବାର୍ତ୍ତା ମଧ୍ୟ ସ୍ୱଷ୍ଟ ନୁହେଁ । ତେଣୁ କିଏ ଅବା ତାଙ୍କୁ ସିନେମାର ଅଭିନେତା କରିବା ନିମନ୍ତେ ରାଜିହେବ ?

ତେଣୁ ପ୍ରଯୋଜକ ତାଙ୍କୁ ପ୍ରତ୍ୟାଖ୍ୟାନ କରିଦେଲେ । ବିଫଳ ହୋଇ ଫେରିଗଲେ ଷ୍ଟାଲ୍ଲୋନ୍ । କିଛି ସପ୍ତାହ ପରର ଘଟଣା । ଗୋଟିଏ ଷ୍ଟୁଡିଓ ତାଙ୍କ ପାଣ୍ଡୁଲିପିକୁ ୨ଲକ୍ଷ ୫୦ହଜାର ଡଲାର୍ ଦେବା ପାଇଁ ରାଜିହେଲେ ସିନା, ହେଲେ ତାଙ୍କୁ ଅଭିନେତା କରିବା ପାଇଁ ମନା କରିଦେଲେ । ପରେ ସେମାନେ ତିନିଲକ୍ଷ ୫୦ହଜାର ଦେବା ପାଇଁ ସମ୍ମତ ହେଲେ; ମାତ୍ର ଅଭିନେତା ଭାବରେ ତାଙ୍କୁ ଗ୍ରହଣ କରିବା ନିମନ୍ତେ ମନା କରିଦେଲେ ।

ସମସ୍ତେ କିନ୍ତୁ ଷ୍ଟାଲ୍ଲୋନ୍‌ଙ୍କୁ ବୁଝେଇଲେ, 'ଆଉ ପାଗଳାମି ନ କରି ପାଣ୍ଡୁଲିପିଟିକୁ ଦେଇଦିଅ ।' ମାତ୍ର ଷ୍ଟାଲ୍ଲୋନ୍ ନଛୋଡ଼ବନ୍ଧା । ପାଣ୍ଡୁଲିପିଟିକୁ ଦେବା ପାଇଁ ସେ ପୁନର୍ବାର ମନା କରିଦେଲେ । ହେଲେ ଷ୍ଟୁଡିଓରେ ଜଣେ ବ୍ୟକ୍ତି ପାଣ୍ଡୁଲିପିଟିରେ ଖୁବ୍ ମୁଗ୍ଧ ହୋଇପଡ଼ିଥିଲେ । ସାହସୀ ଲୋକଙ୍କୁ ଭାଗ୍ୟ ସର୍ବଦା ଅନୁକୂଳ ହୋଇଥାଏ । ବ୍ୟକ୍ତିଜଣକ କହିଲେ ଯେ ସେ ତାଙ୍କୁ ସିନେମାରେ ମୁଖ୍ୟ ଅଭିନେତା କରିବେ ସିନା; ମାତ୍ର ପାଣ୍ଡୁଲିପି ପାଇଁ ଦେବେ ଜମା ୩୫ହଜାର ଡଲାର୍ । ବାସ୍, ଷ୍ଟାଲ୍ଲୋନ୍ ତୁରନ୍ତ ରାଜି ହୋଇଗଲେ ।

ପାଣ୍ଡୁଲିପିଟିର ବିଷୟବସ୍ତୁକୁ ନେଇ 'ରକି' ନାମକ ସିନେମା ତିଆରିହେଲା । ଏଥିପାଇଁ ଖର୍ଚ୍ଚ ହୋଇଥିଲା



'ରକି' ଚଳଚ୍ଚିତ୍ରର ଏକ ଦୃଶ୍ୟ

ମୋଟ ୧୦ଲକ୍ଷ ଡଲାର୍; ମାତ୍ର ସିନେମା ହେବା ପରେ କେତେ ଆୟ ହେଲା ସେଥିରୁ ? ସିନେମା ଟିକେଟ୍ ବିକ୍ରିରୁ ଆୟ ହୋଇଥିଲା ୨୦୦୦ଲକ୍ଷ ବା ୨୦କୋଟି ଡଲାର୍ !

କେବଳ ସେତିକି ନୁହେଁ । ସିନେମାର ସର୍ବୋତ୍କୃଷ୍ଟ ଛବି, ସର୍ବୋତ୍କୃଷ୍ଟ ନିର୍ଦ୍ଦେଶନା ଓ ସର୍ବୋତ୍କୃଷ୍ଟ ଚଳଚ୍ଚିତ୍ର ସଂପାଦନା ପାଇଁ ତାହା ଲାଭକଲା ସର୍ବଶ୍ରେଷ୍ଠ ଓସ୍କାର ପୁରସ୍କାର । ଷ୍ଟାଲ୍ଲୋନ ଆଉ ପଛକୁ ଫେରି ଚାହିଁନାହାନ୍ତି । ପାଣ୍ଡୁଲିପି ଲେଖା ଓ ଅଭିନୟ କରି ସେ ଅର୍ଜନ କରିଥିଲେ କୋଟି କୋଟି ଡଲାର ।



ମାତ୍ର ସେ ପ୍ରଥମେ ଯେଉଁ ୩୫ହଜାର ଡଲାର୍ ପାଇଥିଲେ, ସେଥିରେ ସେ କଲେ କ'ଣ ? ଯେଉଁ ଦୋକାନରେ ସେ ନିଜ ପୋଷା କୁକୁରଟିକୁ ବିକ୍ରି

# ରାଜାଙ୍କ ନ୍ୟାୟ ବିଚାର

ଶ୍ରୀମତୀ କୁମୁଦଲତା ମହାନ୍ତି

ଜାହାଙ୍ଗୀରଙ୍କର ପତ୍ନୀ ନୁରଜାହାନ୍
ଧନୁର୍ବିଦ୍ୟା ଶିଖୁଥିଲେ
କୌଣସି ସ୍ଥାନକୁ ଲକ୍ଷ୍ୟକରି ସିଏ
ତୀରଟିଏ ଛାଡ଼ିଦେଲେ ।

କିଛିକ୍ଷଣ ପରେ ଧୋବଣୀ ଗୋଟିଏ
ଆସି ଅଭିଯୋଗ କଲା
'ତୀର ବାଜି ମୋର ପତି ପ୍ରାଣ ଗଲା
କିଏ ସେ ଏକଥା କଲା ?'

ପଚାରି ବୁଝିଲେ ରାଜା ଜାହାଙ୍ଗୀର୍
ନୁର୍‌ଜାହାନ୍ ହେଲେ ଦୋଷୀ



ଡକାଇବାରୁ ସେ ରାଜଦରବାରେ
ଶୀଘ୍ର ପହଞ୍ଚିଲେ ଆସି ।
ଅଣ୍ଟାରୁ କାଢ଼ିଲେ ରାଜା ଏକ ଖଣ୍ଡା
ଧୋବଣୀ ହାତରେ ଦେଇ
କହିଲେ– 'ମୋ ପ୍ରାଣ ନିଅ ଏବେ ତୁମେ
ସୁଖୀ ହୁଅ ନ୍ୟାୟ ପାଇ ।'
ଧୋବଣୀ ଭାବିଲେ ଧନ୍ୟ ଏହି ରାଜା
ନ୍ୟାୟ ପାଇଁ କି ନ କଲେ !
ଏତିକି ଭାବି ସେ ଖଣ୍ଡା ନ ଧରିଣ
ମୁଣ୍ଡ ତଳକୁ ପୋତିଲେ ।
ବାସ୍ତବରେ ଜାହାଙ୍ଗୀରଙ୍କ ହୃଦୟ
କେତେ ଯେ ଥିଲା ଉଦାର !
ସମସ୍ତଙ୍କ ପାଇଁ ନିୟମ ସମାନ
ଏକଥା କଲେ ବିଚାର ।
ସତ୍ୟ, ଧର୍ମ, ନ୍ୟାୟ ଯେ କରେ ପାଳନ
ମାନବ ଦେବତା ସିଏ,
ନ୍ୟାୟ ପାଇଁ ନିଜ ଜୀବନ ଦେବାକୁ
ହସି ଆଗଭର ହୁଏ ।

*ପ୍ଲଟ୍ ନଂ- ଏସ୍ ୩/ ୭୨୧, ଫେଜ୍-୨,*
*ନୀଳାଦ୍ରି ବିହାର, ଭୁବନେଶ୍ୱର- ୭୫୧୦୨୧*

---

କରିଥିଲେ, ତାଙ୍କର ଦେଖା ପାଇଲେ । ବାସ୍, ତାଙ୍କୁ ୧୫ହଜାର ଡଲାର ଦେଇ ନିଜ ପୋଷାକୁକୁରଟିକୁ କିଣିନେଲେ ତାଙ୍କଠାରୁ । ମନେପକାନ୍ତୁ, କୁକୁରଟିକୁ ବିକ୍ରି କରିଥିଲେ ଜମା ୨୫ଡଲାର୍‌ରେ !

ପ୍ରକୃତରେ ଜୀବନଟା ସବୁବେଳେ ସରଳରେଖାରେ ଗତି କରି ନଥାଏ । କେତେବେଳେ ଉତ୍‌ଥାନ ଥାଏ ତ କେତେବେଳେ ପତନ । କେତେବେଳେ ଦିନଦିନ ଧରି ବିଫଳତା ତ ବିଫଳତା ପରେ ଅସାଧାରଣ ସଫଳତା !

– ଏହା ହିଁ ଘଟିଥିଲା ଷ୍ଟାଲୋନ୍‌ଙ୍କ ଭାଗ୍ୟରେ ।

*'ଅଭୀପ୍‌ସା', ସେକ୍ଟର-୬, ପ୍ଲଟ ନଂ-୧୧୩୧,*
*ଅଭିନବ ବିଡ଼ାନାସୀ, କଟକ- ୭୫୩୦୧୪*



# ଋଗ୍‌ବେଦର ସଂକ୍ଷିପ୍ତ ପରିଚୟ

ଶ୍ରୀ ଚନ୍ଦ୍ରଶେଖର ମହାନ୍ତି

ବ୍ରହ୍ମା, ମନୁ ଆଦି ପ୍ରାଚୀନ ଋଷିଙ୍କ ଠାରୁ ଦୟାନନ୍ଦ, ଅରବିନ୍ଦ ଆଦି ଆଧୁନିକ ମନ୍ତ୍ରଦ୍ରଷ୍ଟା ଯୋଗୀମାନେ ବୈଦିକ ସାହିତ୍ୟକୁ ଆଦି ସୃଷ୍ଟିର ଈଶ୍ୱରପ୍ରଦତ୍ତ ଜ୍ଞାନ ରୂପରେ ଗ୍ରହଣ କରିଛନ୍ତି । ଋକ୍, ଯଜୁଃ, ସାମ ଓ ଅଥର୍ବ– ଚାରିବେଦ ମଧ୍ୟରୁ ଋଗ୍‌ବେଦ ପ୍ରଥମ । ମେକ୍ସ ମୁଲେର (ଇଂରେଜ) ୱାଲଟର (ଫ୍ରାନ୍‌ସ) ଆଦି ବିଦ୍ୱାନ ଏହା ପୃଥିବୀର ସର୍ବପ୍ରଥମ ଗ୍ରନ୍ଥ ବୋଲି କହିଛନ୍ତି ।

ଋଗ୍‌ବେଦରେ ମନ୍ତ୍ର ସଂଖ୍ୟା ୧୦୫୫୨ । ଏହି ବେଦରେ କୁହାଯାଇଛି ଯେ ପରମେଶ୍ୱରଏକ । ବିଭିନ୍ନ ଗୁଣ ଅନୁସାରେ ବହୁ ନାମରେ ଆମେ ଡାକୁଛେ । ସେ ସୃଷ୍ଟି ତିଆରି କରିଥିବାରୁ ବ୍ରହ୍ମା, ସର୍ବବ୍ୟାପକ ହୋଇ ପାଳନ କରୁଥିବାରୁ ବିଷ୍ଣୁ, କଲ୍ୟାଣକାରୀ ହୋଇଥିବାରୁ ଶିବ, ସମସ୍ତ ଏଶ୍ୱର୍ଯ୍ୟର ମାଲିକ ହୋଇଥିବାରୁ ଇନ୍ଦ୍ର, ଜଗତରନାଥ ହୋଇଥିବାରୁ ଜଗନ୍ନାଥ, ଅନନ୍ତ ଜ୍ଞାନର ଭଣ୍ଡାର ହୋଇଥିବାରୁ ସରସ୍ୱତୀ, କଳ୍ପନାକୁ ଦହନ କରିଥିବାରୁ କାଳୀ, ମଙ୍ଗଳ କରୁଥିବାରୁ ମଙ୍ଗଳା, ତାରଣ କରିଥିବାରୁ ତାରିଣୀ, ଦୁର୍ଗତି ବିନାଶ କରୁଥିବାରୁ ଦୁର୍ଗା ଇତ୍ୟାଦି ତାଙ୍କର ବହୁତ ନାମ । କିନ୍ତୁ ମୁଖ୍ୟ ନାମ ହେଲା ‘ଓମ୍’ ।

ଋଗ୍‌ବେଦ କହନ୍ତି ଯେ ମନୁଷ୍ୟ ହୁଅ ଓ ଦେବ ସନ୍ତାନକୁ ଉତ୍ପନ୍ନ କର । ପରମାତ୍ମା ଆମକୁ ସଂପ୍ରଦାୟବାଦୀ ବା ଗୋଷ୍ଠୀବାଦୀ ହେବାକୁ କହିନାହାନ୍ତି । ବିଶ୍ୱକୁ ଆର୍ଯ୍ୟ ଅର୍ଥାତ୍ ଶ୍ରେଷ୍ଠ କରିବାକୁ ଉପଦେଶ ଦେଇଛନ୍ତି । ବିଶ୍ୱରେ ବସବାସ କରୁଥିବା ସମସ୍ତ ଜୀବଗଣ, ଜଳ, ବାୟୁ, ଆଦି ପଦାର୍ଥକୁ ଶୁଦ୍ଧପୂତ କରିବା ପାଇଁ ଯଜ୍ଞାନୁଷ୍ଠାନ ବା ହୋମ ବା ହବନ ଆଦିର ପ୍ରଚଳନ କରିଛନ୍ତି । ମନରୁ ହିଂସା, ଦ୍ୱେଷ, କାମନା ଆଦି ପରିତ୍ୟାଗ କରି ସୁଖଶାନ୍ତିରେ ଜୀବନ କଟାଇବାକୁ କହିଛନ୍ତି । ସୁସ୍ଥତା ପାଇଁ ରାଜ୍ୟ ତଥା ଦେଶର ମୁଖ୍ୟମାନଙ୍କୁ କୁହାଯାଇଛି, ‘‘ହେ ରାଷ୍ଟ୍ରପତେ ! ସମଗ୍ର ଜନତା ତୁମ୍ଭକୁ ଚାହାନ୍ତୁ, ତୁମଦ୍ୱାରା ରାଜ୍ୟ ଭଂଗ ନ ହେଉ ।’’

ନାରୀକୁ ଋଗ୍‌ବେଦରେ ନିର୍ମାତ୍ରୀ ନାମ ଦିଆଯାଇଛି । ନାରୀ ପରିବାର ଓ ସମାଜର ମସ୍ତକତୁଲ୍ୟ ବୋଲି କହିବାସହ ନାରୀମାନେ ବେଦପାଠ କରିବେ, ପଇତା ଧାରଣ କରିବେ, ଯାଗଯଜ୍ଞରେ ମହତ୍ତ୍ୱ ପୂର୍ଣ୍ଣ ଭାଗ ଗ୍ରହଣ କରିବେ । ଋଗ୍‌ବେଦର ପ୍ରଥମ ମନ୍ତ୍ରରେ ପରମାତ୍ମାଙ୍କୁ ‘ଅଗ୍ନି’ ରୂପରେ ନିବେଦନ କରାଯାଇଛି । ବାୟୁମଣ୍ଡଳରେ ମେଘମାଳା ମଧ୍ୟରେ ବିଜୁଳି ରୂପରେ, ସୂର୍ଯ୍ୟ ଦେହରେ, ଜଳରେ, ମାଟିତଳେ ପେଟ୍ରୋଲିୟମ୍ ଏବଂ କୋଇଲା ଭିତରେ, ପଥରଖଣ୍ଡ ଭିତରେ, ଆମ ପରିପାକ ଥଳୀ ଭିତରେ, ଶୁଖିଲା କାଠଗଡ଼ ଭିତରେ ଅଗ୍ନି ଅଛନ୍ତି । ବିଭିନ୍ନ କାମ କରୁଥିବାରୁ ଆମେ ବଞ୍ଚିଛେ । ଅନେକ ହଜାର ବର୍ଷ ପୂର୍ବରୁ ଋଷି- ବୈଜ୍ଞାନିକମାନେ ଏହି ତଥ୍ୟ ମାନବ ସଭ୍ୟତାକୁ ଦେଇଛନ୍ତି ।

ଶେଷମନ୍ତ୍ରରେ ମଣିଷମାନଙ୍କୁ ଅମୃତ ସନ୍ତାନ ଭାବେ ଗ୍ରହଣ କରି ମନ୍ତ୍ରଦ୍ରଷ୍ଟା ଋଷି କହିଛନ୍ତି– ‘‘ ଜୀବସୃଷ୍ଟି ପୂର୍ବରୁ ମୁଁ ତୁମମାନଙ୍କୁ ଅପୂର୍ବ ଦେହ ପ୍ରଦାନ କରିଛି । ତୁମର ମସ୍ତିଷ୍କ ହେଉଛି ସିଦ୍ଧାନ୍ତ ନେବା ଓ ବୁଦ୍ଧିର ଅପୂର୍ବ

ଭଣ୍ଡାର । ତୁମର ଦେହ ପ୍ରେମ ଓ ମୈତ୍ରୀର କୋଠାଘର । ସମସ୍ତଙ୍କୁ ସମନ୍ୱୟ କରି ବଞ୍ଚିରହୁ ।''

ବେଦ ସଂସ୍କୃତ ଭାଷାରେ ଲେଖାଯାଇଛି- ଆଜିର ବିଜ୍ଞାନ, ଜ୍ଞାନ, ପ୍ରଜ୍ଞାନ, ସବୁ ବେଦରୁ ଆମେ ଆଣିଛେ ଭିନ୍ନ ଭିନ୍ନ ରୂପରେ । ବୈଦିକ ସାହିତ୍ୟ ଓ ବ୍ୟାକରଣକୁ ଆୟତ୍ତ କଲେ ମନ୍ତ୍ରର ଅର୍ଥକୁ ବୁଝିହେବ ।

ଆମେ ଯେଉଁ ଦେବ, ଦେବୀମାନଙ୍କୁ ପୂଜା କରୁଛେ, ବାସ୍ତବରେ ତାହା କଳ୍ପନା । ବେଦ ହିଁ ଏକ ଈଶ୍ୱରଙ୍କୁ ନିବେଦନ କରିଛନ୍ତି । ଉଦାହରଣ ସ୍ୱରୂପ, ପୂଜା କହିଲେ ଆମେ –ନଡ଼ିଆ, କଦଳୀ, ଧୂପକାଠି, ଛିଟକନା ନେଇ ପ୍ରାର୍ଥନାକୁ ବୁଝୁ । କିନ୍ତୁ ତାହା ପୂଜା ନୁହେଁ, ତୁଳସୀ ଗଛ ମୂଳରେ ଗୋବର ଖତ, ଜଳ ଢାଳିବା ହିଁ ବାସ୍ତବ ପୂଜା । ଧୂପକାଠି ତୁଳସୀ ମୂଳରେ ଦେଲେ ଫସ୍‌ଫରସ୍ ଓ ସଲଫର ଆଦି ରାସାୟନିକ ପଦାର୍ଥର ଧୂଆଁରେ ଗଛ ଉଧେଇ ପାରିବନି । ବେଦରେ ଇତିହାସ, ଭୂଗୋଳ, ଆଦି ଲୌକିକ ବିଷୟ ବର୍ଣ୍ଣନା କରାଯାଇନାହିଁ । ଜାତି, ଗୋଷ୍ଠୀ, ସଂପ୍ରଦାୟ ଆଦି ବିଭାଜନ ବେଦ କରିନାହିଁ । ଆମେ ମଣିଷମାନେ ଏହି ବିଭାଜନ କରି ପରସ୍ପର ମଧ୍ୟରେ ମାର୍‌ପିଟ ହେଉଛେ ।

ବୈଦିକ ସାହିତ୍ୟରେ ଯାହାକୁ ମେଘ, ଜଳ ଆଦି ଅର୍ଥରେ ନିଆଯାଇଛି, ଲୌକିକ ଅର୍ଥରେ ଆମେ ତାହାକୁ ପୁରୁଷ, ଘୃତ ଆଦି ଭାବରେ ନେଇଛେ । ବୈଦିକ ଶବ୍ଦଗୁଡ଼ିକୁ ବୁଝି ହେଉ ନ ଥିବାରୁ ଚଳନ୍ତି ସାହିତ୍ୟରେ ତାକୁ ଭିନ୍ନ ଭାବେ ଗ୍ରହଣ କରିବାକୁ ବାଧ୍ୟହେଲେ । କାରଣ ବେଦ ପରବର୍ତ୍ତୀ ସମୟରେ ମଣିଷ ଅଳସୁଆ ହୋଇଗଲା ।

ଋଗ୍‌ବେଦ ସତ୍ୟପଥରେ ଗତି କରିଛି; କିନ୍ତୁ ଭୁଲ ବୁଝାମଣା ଯୋଗୁଁ ଆବଶ୍ୟକ ବିଜ୍ଞାନସମ୍ମତ ସିଦ୍ଧାନ୍ତଗୁଡ଼ିକୁ ଆମେ ଛାଡ଼ିଦେଲେ । କିନ୍ତୁ ମହାପୁରୁଷ ରାଜା ରାମମୋହନ, ଦୟାନନ୍ଦ, ବିନୋବା ଜନ୍ମନେଇ ଋଗ୍‌ବେଦର ବିଷୟବସ୍ତୁକୁ ପ୍ରଚାରକଲେ । ଏକେଶ୍ୱରବାଦକୁ ସମର୍ଥନ କଲେ ।

*ବଡ଼ମ୍ବା, କଟକ-୭୫୪୦୩୧*

---



## କହିଲ ଦେଖି ?

ଇଂ. ସୁଧୀର ମଲ୍ଲିକ

ପାଞ୍ଚୋଟି ଅକ୍ଷରେ ଶବ୍ଦଟି ଆଣ
ପର୍ଯ୍ୟଟନ ସ୍ଥଳ ସିଏ ତ ଜାଣ ।
ପ୍ରଥମ ଦ୍ୱିତୀୟ ଏକତ୍ର କଲେ
ରଙ୍ଗ ଏକ ନାମ ଜାଣିବ ଭଲେ ।
ତୃତୀୟ ଦ୍ୱିତୀୟ ଦେଲେ ମିଶାଇ
ଫୁଲକୁ ଗୁନ୍ଥିଲେ ପାଇବ ତହିଁ ।
ଚତୁର୍ଥ ପଞ୍ଚମ ଯେବେ ଯୋଡ଼ିବ
ଧଳା ଅନ୍ୟ ନାମ ତେବେ ପାଇବ ।
ଚତୁର୍ଥ ପ୍ରଥମ କଲେ ସଂଯୋଗ
ନିର୍ଦ୍ଧନ ବିପରୀତ ପାଇବ ଆଗ ।
ପଞ୍ଚମ ଦ୍ୱିତୀୟ ଏକାଠି ମିଶା
ବଲୁଆ ଅର୍ଥକୁ ସେଇଠି ବସା ।
ଏହାର ଉତ୍ତର ଯିଏ କହିବ
ବିଶ୍ୱାବସୁ ରାଜାଙ୍କୁ ସିଏ ଭେଟିବ ।

ସଂଗଠନ ସମ୍ପାଦକ, 'ଫକୀର ମୋହନ ସ୍ମୃତି ସଂସଦ',
ଡିମିରି, ନୋଦା, କଟକ

*(ଉତ୍ତର ୧୬ ପୃଷ୍ଠାରେ)*

# ବୁଦ୍ଧି ପରୀକ୍ଷା

ଶ୍ରୀ ସହଦେବ ସାହୁ

୧ । ଗଛ ଅଗରେ ବସିଥିବା ଗୋଟିଏ ଚଢ଼େଇକୁ ନ ହୁରୁଡ଼ାଇ କିପରି ସେ ଅଗଟିକୁ ଝୁଙ୍କାଇଆଣିବ ?

୨ । କେଉଁ ପ୍ରଶ୍ନର ଉତ୍ତର 'ହଁ' ବୋଲି କଦାପି କହିହେବ ନାହିଁ ?

୩ । ଜଣେ ଲୋକ କ୍ରମାନ୍ୱୟରେ ସାତ ଦିନ ନ ଶୋଇ ମଧ୍ୟ କ୍ଳାନ୍ତ ହେଲାନାହିଁ କିମ୍ବା ତାକୁ ନିଦୁଆ ନିଦୁଆ ଲାଗିଲା ନାହିଁ । ଏହା କିପରି ସମ୍ଭବ ହେଲା ?

୪ । ଏମିତି କେଉଁ ଜିନିଷ ଦୁନିଆରେ ଅଛି, ଯାହା ଯେତେ ବେଶି ଥିବ, ଆମେ ତେତେ କମ୍ ଦେଖିପାରିବା ?

୫ । ହଳେ ବଳଦ ପାଇଁ କ'ଣ ଦରକାର ?

୬ । କିଏ ପୃଥିବୀ ସାଙ୍ଗରେ ଜନ୍ମନେଇଛି, ପୃଥିବୀ ଥିଲା ପର୍ଯ୍ୟନ୍ତ ରହିଥିବ, ତଥାପି ତା'ର ବୟସ ଦୁଇ ପକ୍ଷରୁ ବେଶୀ ନୁହେଁ ?

୭ । କେଉଁଠି ସମସ୍ତେ ଏକାପରି ଜଣାଯାଆନ୍ତି ?

୮ । ଓଡ଼ିଆ ବର୍ଣ୍ଣମାଳାର କେଉଁ ଦୁଇଟି ଅକ୍ଷର ମଝିରେ ଶୂନ ଅଛି ?

୯ । କେଉଁ ଜିନିଷ ଖୁବ୍ ହାଲ୍‌କା ହୋଇଥିଲେ ବି ତାକୁ ଉଠେଇ ହେବନାହିଁ ।

୧୦ । କାହାର ବେକ ଅଛି, କିନ୍ତୁ ମୁଣ୍ଡ ନାହିଁ ?

(ଉତ୍ତର ୧୯ ପୃଷ୍ଠାରେ)

ଜଣେ ସ୍ତ୍ରୀଲୋକ କଠିନ ତପସ୍ୟା କରିକି ଶିବଙ୍କୁ ସନ୍ତୁଷ୍ଟ କଲେ ।

ଶିବ– ମୁଁ ପ୍ରସନ୍ନ ହେଲି, ଗୋଟେ ବର ମାଗ ।

ସ୍ତ୍ରୀଲୋକ– ପ୍ରଭୁ ! ମୋତେ ଗୋଟେ ନୁହେଁ ୩ଟି ବର ଦରକାର ।

ଶିବ– ଠିକ୍ ଅଛି; କିନ୍ତୁ ଗୋଟେ ସର୍ତ୍ତରେ । ତୁମକୁ ଯାହା ବର ଦେବି, ତୁମ ଶାଶୁଙ୍କୁ ତା'ର ଦଶଗୁଣ ଦେବି ।

*(ଶିବ ଭାବିଲେ ମୋର ଏ କଥାରେ ସେ ବୋଧେ ମନା କରିବ)*

ସ୍ତ୍ରୀ ଲୋକ– ଚଳିବ । ପ୍ରଥମ ବରରେ ସ୍ତ୍ରୀଲୋକ ଜଣକ ଦଶହଜାର ଟଙ୍କା ମାଗିଲେ । ଶିବ 'ତଥାସ୍ତୁ' କହିଲେ ଏବଂ ଶାଶୁଙ୍କୁ ଏହାର ୧୦ ଗୁଣ ଟଙ୍କା ମିଳିଲା ।

ଦ୍ୱିତୀୟ ବରରେ ତାଙ୍କର ସୁନ୍ଦର ଚେହେରା ହେବାପାଇଁ ପ୍ରାର୍ଥନା କଲେ । ତାହାହିଁ ହେଲା ଏବଂ ଶାଶୁ ୧୦ଗୁଣା ସୁନ୍ଦର ଚେହେରା ପାଇଲେ ।

ଶେଷରେ ସ୍ତ୍ରୀଲୋକ ମାଗିଲେ– ମତେ କିଞ୍ଚିତ ପରିମାଣର ହୃଦ୍‌ଘାତ ଦିଅନ୍ତୁ । ଶାଶୁଙ୍କୁ ମଧ୍ୟ ୧୦ଗୁଣ ହୃଦ୍‌ଘାତ ହୋଇ ଶାଶୁ ଆରପାରିକି ଚାଲିଗଲେ । ଏବେ ସବୁକିଛି ସେହି ସ୍ତ୍ରୀଲୋକଙ୍କର ହୋଇଗଲା ।

ସେଠାରୁ ଶିବ ତ୍ରିଶୂଳ ଓ ଧନୁଶର ଧରି କ୍ରୋଧରେ ସେହି ବ୍ୟକ୍ତିଜଣଙ୍କୁ ଖୋଜିଲେ, ଯିଏ କହିଥିଲା– 'ମହିଳାଙ୍କର (ବୁଦ୍ଧି) ନାହିଁ ।'

ଉତ୍ତର- ନୀଳମାଧବ

# ମୁଁ ବି ତୋର ମା'

## ଇଂ. ପ୍ରେମାନନ୍ଦ ନାୟକ

ଜଙ୍ଗଲରେ ଆଉ ଗଛବୃଛ ନାହିଁ । କାଁ, ଭାଁ କୋଉଠି ଗୋଟାଏ, ଯୋଡ଼ାଏ ଗଛ ଦିଶୁଚି । ଗଛବୃଛ ନ ଥିବାରୁ ପଶୁ-ପକ୍ଷୀ ବି ନାହାନ୍ତି । କିଏ ଶିକାରୀ ଗୁଳିରେ ମରିଚି ତ ଆଉ କିଏ ପିଲାଛୁଆ ଧରି ଆଉ କୋଉ ଜଙ୍ଗଲକୁ ପଳେଇଯାଇଛି । ରହିଯାଇଛି ଗୋଟେ ମାଙ୍କଡ଼ ଛୁଆ ଆଉ ମା'ପୁଅ ଠେକୁଆ ଦି'ଟା । ଠେକୁଆ ତା' ପୁଅକୁ ଗେଲକଲାବେଳେ ମାଙ୍କଡ଼ ଛୁଆ ଆଖିପୂରେଇ ଦେଖେ । ମନକୁ ମନ କହେ, ''ମୋ ମା' ଥିଲେ ମତେ ଏମିତି ଗେଲ କରୁଥାନ୍ତା । ଏ ଠେକୁଆ ମାଉସୀ, ମତେ ଥରେ ପୁଅ ବୋଲି ଡାକିବୁ ? ଗେଲକରିବୁ ?'' ସବୁଦିନ ଭାବେ, ମନର କଥା ଠେକୁଆକୁ କହିବ; ହେଲେ କହିପାରେନା ।



ଦିନେ ପିଲା ଦି'ଟା ଜାଲଟାଏ ଆଣି ଆମ୍ବଗଛ ମୂଳରେ ବାନ୍ଧିଲେ । ଆମ୍ବଗଛ ପାଖରେ ଥିବା ଝଙ୍କାଳିଆ କଣ୍ଟାବୁଦା ଭିତରେ ଠେକୁଆ ତା' ଛୁଆକୁ ନେଇ ଶୋଇଥିଲା । ଜାଲବନ୍ଧା ଦେଖି ଚମକିପଡ଼ିଲା । ମନକୁ ମନ କହିଲା– ମାଙ୍କଡ଼ ଛୁଆର ମା' ନାହିଁ ବୋଲି କ'ଣ ତା'ର କେହି ସାହା ନାହିଁ !! ମୁଁ ତାର ମାଆ । ଦେଖିବା ତମେ ଦି'ଟା କେମିତି ତାକୁ ଧରିବ !! ଠେକୁଆ ତା' ଛୁଆକୁ ଚୁପ୍-ଚାପ୍ କହିଲା– ଧନରେ ! ମାଙ୍କଡ଼ ଛୁଆ ବିପଦରେ ପଡ଼ିଚି । ତୁ ଚୁପଚାପ୍ ଏଇଠି ଶୋଇଥିବୁ । ଜମା କାନ୍ଦିବୁନି କି ମତେ ଡାକିବୁନି ! ମନେରଖିଲୁ ତ ?

ଯୋଉପଟେ ପିଲାଦି'ଟା ଠିଆ ହୋଇଥିଲେ, ତାର ଆରପଟ ଦେଇ ବୁଦା ଭିତରୁ ବାହାରିଲା ଠେକୁଆ । ପିଲାଦି'ଟାଙ୍କ ପଛପଟେ ଛକି ଛକି ଠିଆହେଲା । ଜଣେ ପିଲା କହିଲା- ସାଙ୍ଗ ! ମୁଁ ମାରିବି ଗୋଟେ ଗୁଳି, ତା'ପରେ ତୁ ମାରିବୁ ଗୋଟେ ଗୁଳି । ଏକାବେଳେ ଦି'ଜଣ ଗୁଳି ମାରିଲେ, ଜଣାପଡ଼ିବନି କାହା ଗୁଳି ମାଡ଼ ଖାଇ ମାଙ୍କଡ଼ ଛୁଆ ତଳକୁ ଖସିଲା ।



ଚାହୁଁ-ଚାହୁଁ ପିଲାଟି ବାଟୁଳିଖଡ଼ାରୁ ଗୁଳିଟାଏ ଚାଇଁକିନା ମାରିଦେଲା । ଠେକୁଆ ଦିହରୁ ସବୁ ରକ୍ତ ଶୁଖିଗଲା । ଯଦି ଗୁଳିଟା ମାଙ୍କଡ଼ ଛୁଆ ଦିହରେ ବାଜିବ ! ହେ ଭଗବାନ୍ ! ମାଙ୍କଡ଼ଛୁଆ ଦିହରେ ଗୁଳି ନ ବାଜୁ । ସତକୁ ସତ ଗୁଳିଟା ମାଙ୍କଡ଼ଛୁଆ ଦିହରେ ନ ବାଜି କଡ଼ରେ ଖସିଗଲା । ମାଙ୍କଡ଼ଛୁଆ ଖେଁ ଖେଁ ହୋଇ ଗଛର ଉପର ଡାଳକୁ ଚଢ଼ିଗଲା । ଠେକୁଆ ରାଗିଗଲା । ତା' ମୁହଁରେ ଥିବା ଲମ୍ବା-ଲମ୍ବା ବାଳଗୁଡ଼ା

ପବନରେ ହଲିଲା ଭଳି ହଲିଲା । ଠେକୁଆ କଣ୍ଟାବୁଦା କଡ଼େ କଡ଼େ ପିଲାଦି'ଟାଙ୍କ ପାଖକୁ ଗଲା । ଆଉ ପିଲାଟା ଯେମିତି ବାଟୁଳି ଖଡ଼ାରେ ଗୁଳି ଯୋଖିଚି, ଠେକୁଆ କୁଦାମାରି ପିଲାଟିର ଗୋଡ଼କୁ ଆମ୍ପୁଡ଼ିଦେଇ ବୁଦା ଭିତରକୁ ପଶିଗଲା । ଗୋଡ଼ ପୋଡ଼ିବାରୁ ପିଲାଦି'ଟା ଠରାଠରି ହୋଇ ଚାଲିଗଲେ ।

ମାଙ୍କଡ଼ଛୁଆ ତଳକୁ ଓହ୍ଲାଇଲା । ଠେକୁଆ କହିଲା– ମାଉସୀ ପିଲାଦି'ଟା ଚାଲିଗଲେଣି । ଠେକୁଆ ବାହାରକୁ ଆସିଲା । ମାଙ୍କଡ଼ ଛୁଆ କହିଲା– ମାଉସୀ ତମେ ଆଜି ନ ଥିଲେ ମୁଁ ନିଷ୍ଚେ ପିଲାଙ୍କ ହାତରେ ଧରାପଡ଼ିଥାନ୍ତି । ତମ ଉପକାର ମୋର ସବୁଦିନ ମନେରହିବ । ମାଉସୀ, ଚାଲ ଆମେ ଏଠୁ ପଳାଇବା । ସେ ପିଲା ଦି'ଟା ତମକୁ ଦେଖିଛନ୍ତି, ପୁଣି ଆସିବେ ।



ଠେକୁଆ କହିଲା, ''ଆସନ୍ତୁ, ତୁ ହୁସିଆରରେ ଥିବୁ । ମୁଁ ଆଉ କୋଉ ବୁଦା ଭିତରେ ଘର କରୁଛି । ଦେଖିବା ସେ ଦି'ଟା ଆମର କ'ଣ କରିବେ !'' ଶୁଣରେ ବାପା, ଦିହର ବଳ ଅପେକ୍ଷା ମୁଣ୍ଡର ବୁଦ୍ଧି ବିପଦ ସମୟରେ ବହୁତ ସାହାଯ୍ୟ କରିଥାଏ । ତୁ ଗଛର ସଦା ଉପର ଡାଳରେ ବସିବୁ ଯା' ।'' ଠେକୁଆ ତା'ଛୁଆକୁ ନେଇ ଆଉ ଗୋଟେ ବୁଦା ଭିତରେ ପଶିଗଲା ।

ଦି'ଦିନ ପରେ ପିଲା ଦି'ଟା ଆସିଲେ । ଗଛ ଉପରକୁ ଚାହିଁଲେ । ଆରେ, ମାଙ୍କଡ଼ଛୁଆ ଗଛର ଉପର ଡାଳରେ ବସିଛି । ବାଟୁଳିଖଡ଼ାରୁ ଗୁଳି ଏତେ ବାଟ ଯାଇପାରିବନି । ଠିକ୍ ଅଛି, ପ୍ରଥମେ ଆମେ ଠେକୁଆକୁ ମାରିବା, ତା'ପରେ ମାଙ୍କଡ଼ ଛୁଆ ଏକୁଟିଆ ହୋଇଗଲେ ଯିବ କୁଆଡ଼େ । ବଳେବଳେ ଧରାପଡ଼ିବ । ଏଥର ପିଲା ଦି'ଟା ଠେକୁଆକୁ ଖୋଜିଲେ । ଗଛଡାଳରେ ବସି ମାଙ୍କଡ଼ଛୁଆ ସବୁ ଦେଖୁଥିଲା । ସେ ଧୀରେ ଧୀରେ ଗଛରୁ ଓହ୍ଲେଇଲା । ଚୁପ୍‌ଚୁପ୍ ଯାଇ ଗୋଟେ ବୁଦା ମୂଳରେ ଲୁଚିଗଲା । ଜୋର୍‌ରେ ଖେଁ ଖେଁ ହେଲା । ମାଙ୍କଡ଼ଛୁଆ ପାଟି ଶୁଣି ଠେକୁଆ ଜାଣିପାରିଲା ବିପଦ ଆସୁଛି । ସେ ତା'ର ଛୁଆକୁ କହିଲା– ଜମା ପାଟି କରିବୁନି । ଆମ ଆଡ଼କୁ ବିପଦ ମାଡ଼ିଆସୁଛି । ଆଖି ବନ୍ଦ କରି ଶୋଇଯା' । ମୋ ସୁନାପୁଅ କଥା ମାନିବୁ, ମୁଁ ଆସୁଛି ।

ମାଙ୍କଡ଼ଛୁଆ ପିଲା ଦି'ଟାଙ୍କ ପଛରେ ଲୁଚିଛପି ଯାଉଯାଉ ଖଣ୍ଡେ ମଜ୍‌ଭୁତିଆ ବାଡ଼ି ପାଇଗଲା । ମନକୁ ମନ କହିଲା ବାଟୁଳି ଖଡ଼ାରେ ଗୁଳି ରଖି ଲକ୍ଷ୍ୟ କରିବା ପୂର୍ବରୁ ଦେବି ପାହାରେ ଲେଖା । ତମର ଖୁସି ପାଇଁ ଆମେ ବଳି ପଡ଼ିବୁ କାହିଁକି ? ହଉ, ଆଜି ଦେଖିବା କାହାର ବୁଦ୍ଧି ସରସ । ଜିତାପଟ୍ କାହାର ହଉଛି ।

ଠେକୁଆ ତା' ଛୁଆକୁ ଶୁଆଇଦେଇ ଆଉଗୋଟେ ବୁଦା ଭିତରକୁ ପଶିଗଲା । ଖସ୍-ଖାସ୍ କଲା । ପିଲା ଦି'ଟା ଆଖିବୁଜି ବୁଦା ଭିତରକୁ ବାଟୁଳି ଖଡ଼ାରୁ ଗୁଳି ମାରିଲେ । ମାଙ୍କଡ଼ଛୁଆ ଜମା ସହିପାରିଲାନି, ଆରେ ବୁଦା ଭିତରୁ ଆଉ କ'ଣ ଖସ୍‌ଖାସ୍ ଶୁଭୁଛି ! ବାଟୁଳିଖଡ଼ା ଗୁଳି ମାଉସୀ ଦେହରେ ବାଜିଲା କି ! ଏଥର ପିଲାଦି'ଟା

ଠେକୁଆକୁ ଧରିବାକୁ ବୁଦା ଭିତରକୁ ପଶିବାକୁ ଚେଷ୍ଟାକଲେ । ମାଙ୍କଡ଼ଛୁଆକୁ ଆଉ ସମ୍ଭାଳେ କିଏ ? ଧରିଥିବା ବାଡ଼ିରେ ପିଲା ଦି'ଟାଙ୍କୁ ନିର୍ଘାତ ପିଟିଲା । 'ବୋପାଲୋ ମାଆଲୋ ମରିଗଲୁ' କହି ତଳେ ଗଡୁଥିବା ବେଳେ ମାଙ୍କଡ଼ଛୁଆ ତାଙ୍କ ପିଠିକୁ ତା' ମୁନିଆ ନଖରେ ଆମ୍ପୁଡ଼ି ପକେଇଲା । ଲହୁଲୁହାଣ ହୋଇ ପିଲା ଦି'ଟା ପଡ଼ିଉଠି 'ଛୁ' ମାରିଲେ ।

ମାଙ୍କଡ଼ଛୁଆ ଡାକିଲା– ମାଉସୀ.... ମାଉସୀ... ତମେ କିଛି କହୁନ କାହିଁକି ? ତମର କିଛି ହେଇନି ତ ! ଠେକୁଆ କହିଲା– ହୁଁ, ମୁଁ ଏ ବୁଦା ଭିତରେ ଅଛିରେ ଧନ । ଠେକୁଆକୁ ଦେଖି ମାଙ୍କଡ଼ଛୁଆ କାନ୍ଦି ପକାଇଲା । କହିଲା– ମାଉସୀ, ତମେ ଏଇ ବୁଦା ଭିତରେ ପଶି ଖସ୍‌ଖାସ୍ କରୁଥିଲ, ଏବେ ସେ ବୁଦା ଭିତରୁ ବାହାରୁଛ ? ଠେକୁଆ ମାଙ୍କଡ଼ଛୁଆକୁ ଚାଟି ଦେଇ କହିଲା, ''ଧନରେ, ମୁଁ ବି ତୋର ମା' । ନିଜ ଛୁଆଙ୍କୁ ବଂଚେଇବା ପାଇଁ 'ମା' ମୁଣ୍ଡରେ ବୁଦ୍ଧି ଆପେ ଆପେ ଖୁନ୍ଦି ହୋଇଯାଏ । ତୁ ଆଜି ଏ ଦି'ଟାକୁ ଏମିତି ପିଟିଲୁ ଯେ ଆଉ କେବେ ତୋତେ ଧରିବାକୁ ମନ ବଳେଇବେନି ।'' ମାଙ୍କଡ଼ଛୁଆ ଠେକୁଆ କୋଳରେ ମଥାଗୁଂଜି କହିଲା– ଏସବୁ ତମରି ବୁଦ୍ଧି ପାଇଁ ହେଲା ।

*ମାତୃନିଳୟ, ସାଲେପୁର, କଟକ-୭୫୪୨୦୨*

---

**'ବୁଦ୍ଧିପରୀକ୍ଷା'ର ଉତ୍ତର–** ୧) ଚଢ଼େଇଟି ଉଡ଼ିଯିବା ପର୍ଯ୍ୟନ୍ତ ଅପେକ୍ଷା କରିବ, ୨) 'ତୁମେ ଶୋଇଛ କି ?', ୩) ସେ ସାତଟିଯାକ ରାତି ଶୋଇଛି, ୪) ଅନ୍ଧାର, ୫) ଦୁଇଟି ବଳଦ, ୬) ଚନ୍ଦ୍ର, ୭) ଅନ୍ଧାରରେ, ୮) 'ଟ' ଓ 'ଡ' ମଝିରେ 'ଠ' ଅଛି, ୯) ପାଣିଫୋଟକା, ୧୦) ବୋତଲ ।




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧) ପ୍ରତିବର୍ଷ କେତୋଟି ବିଭାଗରେ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଥାଏ ?

୨) ଏବେ ଅଷ୍ଟ୍ରେଲିଆର ପ୍ରଧାନମନ୍ତ୍ରୀଙ୍କ ନାମ କଅଣ ?

୩) 'ଶବ୍ଦଧନ୍ଦା'ର ଉଦ୍ଭାବକ କିଏ ?

୪) ବାବା ସାହେବ ଆମ୍ବେଦକରଙ୍କୁ କେଉଁ ମସିହାରେ 'ଭାରତରତ୍ନ' ଉପାଧିରେ ଭୂଷିତ କରାଯାଇଥିଲା ?

୫) ଭାରତର ମନିକା ବାତ୍ରା କେଉଁ ଖେଳ ସହ ସଂପୃକ୍ତ ?

୬) ଭାରତର ପ୍ରଥମ ମାନବ ସମ୍ବଳ ବିକାଶ ମନ୍ତ୍ରୀ ଦାୟିତ୍ୱ କିଏ ତୁଲାଇଥିଲେ ?

୭) ଉପନ୍ୟାସ 'ଗଣଦେବତା'ର ରଚୟିତାଙ୍କ ନାମ କ'ଣ ?

୮) 'ଇନ୍‌କିଲାବ୍ ଜିନ୍ଦାବାଦ' ସ୍ଲୋଗାନ୍‌ର ପ୍ରବର୍ତ୍ତକଙ୍କ ନାମ କ'ଣ ?

୯) କେଉଁ ଦେଶର ଡାକ ଟିକେଟ୍‌ରେ ସେହି ଦେଶର ନାମ ଛପା ହୋଇ ନ ଥାଏ ?

୧୦) କେଉଁ ପୂର୍ଣ୍ଣିମାର ଠିକ୍ ପରଦିନ ହୋଲିପର୍ବ ପାଳନ କରାଯାଇଥାଏ ?

*ଦୁର୍ଗାପୁର, ଭାୟା-ତାଳଚେର, ଅନୁଗୁଳ- ୭୫୯୧୦୦*

*(ଉତ୍ତର ୨୮ ପୃଷ୍ଠାରେ)*



# ଡ୍ରୋନ୍ଃ ଯୁଦ୍ଧକ୍ଷେତ୍ରରୁ ମାନବ ସେବା

ଶ୍ରୀ ସନ୍ତୋଷ କୁମାର ମିଶ୍ର

'ସିରିୟାରେ ବିଦ୍ରୋହୀମାନଙ୍କ ଉପରେ ପୁଣି ଆମେରିକାର ଡ୍ରୋନ୍ ଆକ୍ରମଣ'– ଏହିପରି କିଛି ଖବର କିଛି କିଛି ସମୟ ଅନ୍ତରାଳରେ ସମ୍ବାଦପତ୍ରମାନଙ୍କରେ ପଢୁ କିମ୍ବା ଦୂରଦର୍ଶନରେ ଦେଖୁ ଓ ରେଡିଓରେ ମଧ୍ୟ ଶୁଣିବାକୁ ମିଳିଥାଏ । ଆମେରିକା ଡ୍ରୋନ୍ ମାଧ୍ୟମରେ ୨୦୦୨ ମସିହାରୁ ବିଭିନ୍ନ ପ୍ରକାର ଆତଙ୍କ ସୃଷ୍ଟି କରୁଥିବା ଗୋଷ୍ଠୀ ଉପରେ ବାରମ୍ବାର ଆକ୍ରମଣ କରି ସେମାନଙ୍କୁ ନଷ୍ଟ କରିବାରେ ସମର୍ଥ ହୋଇପାରିଛି ।

ଯଦିଓ ଡ୍ରୋନ୍‌କୁ ବର୍ତ୍ତମାନ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟା ମାଧ୍ୟମରେ ଅତି ସହଜରେ ସଫଳତା ସହିତ ବ୍ୟବହାର କରାଯାଇପାରୁଛି; କିନ୍ତୁ ସାମରିକ କ୍ଷେତ୍ରରେ ଏହାର ବ୍ୟବହାର ବହୁତ ପୁରାତନ । ୧୮୪୯ ମସିହା ଅଗଷ୍ଟ ୨୨ ତାରିଖରେ ୟୁରୋପ ମହାଦେଶର ଅଷ୍ଟ୍ରିଆ ଦେଶ ନିଜର ପଡ଼ୋଶୀ ଦେଶ ଇଟାଲୀର ଭେନିସ ସହର ଉପରେ ଆକ୍ରମଣ କରିଥିଲା । ଏହି ଆକ୍ରମଣ ସମୟରେ ଅଷ୍ଟ୍ରିଆ ନିଜର ଯୁଦ୍ଧ ଜାହାଜ ଭୁଲକାନୋରୁ ବଡ଼ ବଡ଼ ବେଲୁନ୍‌ଗୁଡ଼ିକରେ ବିସ୍ଫୋରକ ଦ୍ରବ୍ୟ ଭର୍ତ୍ତି କରି ଆକାଶକୁ ଛାଡ଼ି ଦେଇଥିଲା । ପବନ ଗତି ଠିକ୍ ଥିବାରୁ ବେଲୁନ୍‌ଗୁଡ଼ିକ ନିଜର ଲକ୍ଷ୍ୟସ୍ଥଳରେ ପହଞ୍ଚି ବିସ୍ଫୋରଣ କରିପାରିଥିଲେ; କିନ୍ତୁ ହଠାତ୍ ବାୟୁର ଦିଗ ପରିବର୍ତ୍ତନ ହେବାରୁ କିଛି ବେଲୁନ୍ ପଛକୁ ଫେରିଆସି ଅଷ୍ଟ୍ରିଆର ନିଜ ସୀମା ପାଖରେ ହିଁ ବିସ୍ଫୋରଣ ଘଟାଇଥିଲେ । ଐତିହାସିକ ମାନେ ମତ ଦିଅନ୍ତି– ଏହା ହେଉଛି ଆକାଶ ମାର୍ଗରୁ ଆକ୍ରମଣର ପ୍ରଥମ ଘଟଣା ।

ବିଶେଷଭାବରେ ପ୍ରଥମ ବିଶ୍ୱଯୁଦ୍ଧ ପରେ ଆକାଶ ମାର୍ଗରୁ କିପରି ଶତ୍ରୁ ଉପରେ ଅତ୍ୟଧିକ ସଫଳତା ସହିତ ଆକ୍ରମଣ କରିହେବ, ସେଥିପ୍ରତି ଆମେରିକାରର ବାୟୁସେନାର ଇଞ୍ଜିନିୟରମାନେ ବିଧିବଦ୍ଧ ଭାବରେ ଗବେଷଣା ଆରମ୍ଭ କରିଥିଲେ । ଏହା ଫଳରେ ବିଭିନ୍ନ ପ୍ରକାରର ଡ୍ରୋନ୍‌ର ଉଦ୍ଭାବନ ହୋଇପାରିଛି । 'ଡ୍ରୋନ୍' ଶବ୍ଦଟି ପୁରାତନ ଇଂରାଜୀ ଶବ୍ଦ 'ଡ୍ରାନ୍'ରୁ ଆସିଛି, ଯାହାର ଅର୍ଥ ପୁରୁଷ ମହୁମାଛି । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବ୍ରିଟିଶ ସୈନିକମାନେ 'ରାଣୀ ମହୁମାଛି' ନାମକ ଏକ ଡ୍ରୋନ୍‌କୁ ସଫଳତା ସହିତ ବ୍ୟବହାର କରିପାରିଥିଲେ ।

ଆମେରିକାର ବାୟୁସେନାରେ ସାମିଲ୍ ଥିବା ଅତ୍ୟନ୍ତ ଶକ୍ତିଶାଳୀ ଡ୍ରୋନ୍‌ଗୁଡ଼ିକ ଦେଖିବାକୁ ଯେକୌଣସି ସାଧାରଣ ଉଡ଼ାଜାହାଜ ପରି; କିନ୍ତୁ ଏହା ପାଇଲଟ ବିନା ଅତି ସହଜରେ ଉଡ଼ିପାରେ ଏବଂ ଯୁଦ୍ଧକ୍ଷେତ୍ରରେ ରହି ନିଜର ଦକ୍ଷତା ପ୍ରଦର୍ଶନ କରିଥାଏ । ପାଇଲଟ୍‌ମାନେ ଭୂମିପୃଷ୍ଠରେ ରହି ଅତ୍ୟାଧୁନିକ କମ୍ପ୍ୟୁଟର ମାଧ୍ୟମରେ ରେଡିଓ ତରଙ୍ଗ ଦ୍ୱାରା ଡ୍ରୋନ୍‌କୁ ନିୟନ୍ତ୍ରଣ କରିଥାନ୍ତି । ଡ୍ରୋନ୍‌ଗୁଡ଼ିକ କ୍ଷେପଣାସ୍ତ୍ର ଓ ଅନ୍ୟାନ୍ୟ ବିସ୍ଫୋରକ ଦ୍ରବ୍ୟ ନିଜ ସହିତ ବୋହିନେଇ ଠିକ୍ ସ୍ଥାନ ଓ ଉଚିତ୍ ସମୟରେ ଆକ୍ରମଣ କରି ସହଜରେ ନିଜ ସ୍ଥାନକୁ ଫେରିଆସନ୍ତି ।

ଆମେରିକା ବ୍ୟତୀତ ବହୁତ ଦେଶ ଡ୍ରୋନ୍ ବ୍ୟବହାର କରନ୍ତି । ଭାରତୀୟ ସେନାବାହିନୀରେ 'ଔରା' ନାମକ ଡ୍ରୋନ୍ ଦେଶର ସେବାରେ ନିୟୋଜିତ ଅଛି ।

ସାମରିକ କ୍ଷେତ୍ରରେ ଏମ୍‌କିୟୁ-୯ ରିପର ପରି ଡ୍ରୋନ୍‌ଗୁଡ଼ିକ ସାରା ବିଶ୍ୱରେ ଭୟ ସୃଷ୍ଟି କରିବାରେ ସମର୍ଥ ଥିବା ସମୟରେ ଘରୋଇ କ୍ଷେତ୍ରରେ ଫ୍ୟାଣ୍ଟମ୍-୪ ନାମକ ଡ୍ରୋନ୍ ବହୁଳ ବ୍ୟବହୃତ ହୁଏ । ଗୋଟିଏ ସାଧାରଣ ଡ୍ରୋନରେ ଗୋଟିଏ ଶକ୍ତିଶାଳୀ ଇଞ୍ଜିନ୍, ଅତି ଶକ୍ତିଶାଳୀ ସମ୍ବେଦକ ଦ୍ରବ୍ୟଗୁଣ ଜ୍ଞାପନ ଯନ୍ତ୍ର ସେନସର୍, କ୍ୟାମେରା, ବୁମ (ଏକ ଶବ୍ଦ ସଂଗ୍ରହ ଯନ୍ତ୍ର), ଦିଗ ନିର୍ଣ୍ଣୟ ଯନ୍ତ୍ର ଇତ୍ୟାଦି ଖଞ୍ଜାଯାଇଥାଏ । ଆମେରିକାର ବିଖ୍ୟାତ ନାଭିକୀୟ ପଦାର୍ଥବିଜ୍ଞାନୀ ଜନ ଷ୍ଟୁଓ୍ୱାର୍ଡ ଫୋଷ୍ଟ ଜୁନିୟରଙ୍କୁ ଆଧୁନିକ ଡ୍ରୋନ୍‌ର ଜନକ ଭାବରେ ପରିଗଣନା କରାଯାଏ ।



ତେବେ ସାମରିକ ଡ୍ରୋନ୍‌ଗୁଡ଼ିକର ଯେତିକି ସୁନାମ ରହିଛି, ସେତିକି ଦୁର୍ନାମ ମଧ୍ୟ ରହିଛି । ବିଭିନ୍ନ ସମୟରେ ଡ୍ରୋନ୍‌ଦ୍ୱାରା ଆକ୍ରମଣ ପାଇଁ ନିରୀହ ଏବଂ ନିର୍ଦ୍ଦୋଷ ନାଗରିକ ସହିତ ନିଷ୍ପାପ ଶିଶୁମାନଙ୍କର ମଧ୍ୟ ମୃତ୍ୟୁ ଘଟିଥାଏ । ଏହାଛଡ଼ା କିଛି ଦେଶ ଡ୍ରୋନ୍ ମାଧ୍ୟମରେ ଅନ୍ୟ ଦେଶ ଉପରେ ଗୁଇନ୍ଦାଗିରି କରିଥାନ୍ତି । ଏହିସବୁ ପାଇଁ ସାମରିକ କ୍ଷେତ୍ରରେ ଏହାର ବ୍ୟବହାରକୁ ନିଷିଦ୍ଧ କରିବା ପାଇଁ ଦାବି ଧୀରେ ଧୀରେ ଜୋର୍ ଧରୁଛି । କୌଣସି ଦେଶ ଏହାକୁ ଯୁଦ୍ଧକ୍ଷେତ୍ରରେ ବ୍ୟବହାର କଲେ ବିଶ୍ୱବ୍ୟାପୀ ଏହାକୁ ନିନ୍ଦା କରାଯାଉଛି; କିନ୍ତୁ ଏପରି ଏକ ଉନ୍ନତ ପ୍ରଯୁକ୍ତିବିଦ୍ୟାକୁ ଚିରଦିନ ପାଇଁ ଅଳିଆ ପେଟିରେ ନ ଫୋପାଡ଼ି କିପରି ଏହାକୁ ଜନକଲ୍ୟାଣ ଉଦେଶ୍ୟରେ ବ୍ୟବହାର କରାଯାଇପାରିବ, ସେଥିପ୍ରତି ବିଶ୍ୱର ବୈଜ୍ଞାନିକମାନେ ପ୍ରୟାସ କରୁଛନ୍ତି ।

ଅଧୁନା ସାମରିକ ଡ୍ରୋନ୍ ବ୍ୟତୀତ ବିଭିନ୍ନ ପ୍ରକାରର ଆବଶ୍ୟକତାକୁ ଦୃଷ୍ଟି ଦିଆଯାଇ ବିଭିନ୍ନ ଆକୃତିର ଭଳିକି ଭଳି ଦକ୍ଷତାସମ୍ପନ୍ନ ଡ୍ରୋନ୍ ସବୁ ନିର୍ମାଣ କରାଯାଉଛି । ଏପରି କୌଣସି କ୍ଷେତ୍ର ନାହିଁ, ଯେଉଁଠାରେ ବିଭିନ୍ନ କଲ୍ୟାଣମୂଳକ କାର୍ଯ୍ୟ ପାଇଁ ଡ୍ରୋନ୍‌ଗୁଡ଼ିକ ବ୍ୟବହାର କରାଯାଉନାହିଁ; ବରଂ ଦିନକୁ ଦିନ ଡ୍ରୋନ୍‌ର ବ୍ୟବହାର ଚାହିଦା ବଢ଼ିବାରେ ଲାଗିଛି ।

କିଛିବର୍ଷ ପୂର୍ବେ ଆମେରିକା, ଇଉରୋପ ମହାଦେଶ ସମେତ ଜାପାନ ଏବଂ ଚୀନରେ ଡ୍ରୋନ୍‌ଗୁଡ଼ିକୁ ହାଲୁକା କିନ୍ତୁ ଜରୁରୀ ଜିନିଷଗୁଡ଼ିକର ପରିବହନ କାମରେ ଲଗାଯାଉଛି । ପ୍ରାକୃତିକ ବିପଦ ସମୟରେ ଡ୍ରୋନ୍‌ଗୁଡ଼ିକ ହିଁ ପ୍ରଥମ ବନ୍ଧୁ ରୂପେ ମାନବ ପାଖରେ ଆସି ଉପସ୍ଥିତ ହୁଅନ୍ତି । ବନ୍ୟା ଏବଂ ଭୂସ୍ଖଳନ ସମୟରେ ଡ୍ରୋନ୍ ମାଧ୍ୟମରେ ଆକାଶମାର୍ଗରୁ ଠିକ୍ ଚିତ୍ର ନିଆଯାଇପାରେ ଓ ସେହି ଅନୁଯାୟୀ ଉଦ୍ଧାର କାର୍ଯ୍ୟକୁ ଅଧିକ ବ୍ୟାପକ କରାଯାଇପାରୁଛି ।

ଅଗ୍ନିକାଣ୍ଡ ସମୟରେ ଡ୍ରୋନ୍‌ରେ ଥିବା ସେନ୍‌ସର ମାଧ୍ୟମରେ ବାୟୁମଣ୍ଡଳରେ ଥିବା ବିଷାକ୍ତ ଗ୍ୟାସର ଘନତ୍ୱ ସମ୍ପର୍କରେ ବିଶେଷଜ୍ଞମାନେ ତଥ୍ୟ ସଂଗ୍ରହ କରି କିପରି ଅଗ୍ନିକାଣ୍ଡକୁ ନିୟନ୍ତ୍ରଣ କରିବା ସହିତ ଲୋକମାନଙ୍କୁ ସହଜରେ ଉଦ୍ଧାର କରାଯାଇପାରିବ, ତାହାର ସଫଳ ଯୋଜନା କରିପାରନ୍ତି । ବିକଶିତ ଦେଶଗୁଡ଼ିକରେ ଡ୍ରୋନ୍‌ଗୁଡ଼ିକ ହିଁ ପୁଲିସର ଘନିଷ୍ଠ ବନ୍ଧୁ । ଡ୍ରୋନ୍‌ଗୁଡ଼ିକ ସବୁ ପାଗରେ ଦିନରାତି ସହରର ରାସ୍ତା ଉପରେ ଘୂରିବୁଲି ତୀକ୍ଷ୍ଣ ନଜର ରଖନ୍ତି । ଏଥିସହିତ ଜାତୀୟ ରାଜରାସ୍ତା ଉପରେ ମଧ୍ୟ ବେପରବାୟ ଯାନ ଚାଳନା ଉପରେ ନଜର ରଖି ସଡ଼କ ଦୁର୍ଘଟଣା ଉପରେ ଅଙ୍କୁଶ ଲଗାଇପାରନ୍ତି ।

ଡ୍ରୋନ୍‌ଗୁଡ଼ିକ ଇଂଜିନିୟରମାନଙ୍କୁ ମଧ ବହୁତ

ସାହାଯ୍ୟକରେ । ହଜାର ହଜାର କିଲୋମିଟର ଧରି ଲମ୍ବି-ଥିବା ବିଦ୍ୟୁତ ତାର ହେଉ କିମ୍ବା ତୈଳ ଓ ଗ୍ୟାସ ପାଇପ୍ (ବିକଶିତ ଦେଶରେ ପାଇପ ଯୋଗେ ତୈଳ ଓ ଗ୍ୟାସ ଜନସାଧାରଣଙ୍କୁ ଯୋଗାଇ ଦିଆଯାଏ)ରେ ଯଦି କେଉଁଠାରେ କିଛି ସମସ୍ୟା ଦେଖାଦିଏ, ତେବେ ଡ୍ରୋନ୍‌ଗୁଡ଼ିକ ସ୍ୱଳ୍ପ ସମୟ ମଧ୍ୟରେ ସମସ୍ୟା, ସ୍ଥାନ ଏବଂ କାରଣ ଇଂଜିନିୟରମାନଙ୍କୁ ଅବଗତ କରାଇପାରନ୍ତି । ଏହାଦ୍ୱାରା ବହୁତ କମ୍ ସମୟ ମଧ୍ୟରେ ତ୍ରୁଟିକୁ ସଜାଡ଼ି ଦେଇହୁଏ ।

ଜନସାଧାରଣ ଏହାଦ୍ୱାରା ବହୁତ ଉପକୃତ ହୁଅନ୍ତି । ସେହିପରି ରେଳ ଧାରଣାରେ ଥିବା ତ୍ରୁଟିଗୁଡ଼ିକ ମଧ୍ୟ ଡ୍ରୋନ୍‌ମାନେ ଖୋଜି ବାହାର କରିପାରନ୍ତି । ଏହାଦ୍ୱାରା ରେଳ ଦୁର୍ଘଟଣାକୁ ଅତି ସହଜରେ ରୋକାଯାଇପାରୁଛି । ବଡ଼ ବଡ଼ ନଦୀ ଉପରେ ବ୍ରିଜ୍ ନିର୍ମାଣ ସମୟରେ ନଦୀର ଦୈର୍ଘ୍ୟ ଓ ଚଉଡ଼ାକୁ ନେଇ ବହୁତ ପ୍ରକାର ହିସାବ କରିବାକୁ ପଡ଼େ । ଡ୍ରୋନ୍ ଏଥିରେ ବହୁତ ସାହାଯ୍ୟ କରେ । ରାସ୍ତା ନିର୍ମାଣ ସମୟରେ ମଧ୍ୟ ଏହାର ଆବଶ୍ୟକତା ପଡୁଛି । ଆକାଶ ମାର୍ଗରୁ ପର୍ଯ୍ୟାବଲୋକନ କରି ଇଂଜିନିୟର ଅତି ସହଜରେ ସବୁ ନକ୍ସା ଠିକ୍ ଭାବରେ ପ୍ରସ୍ତୁତ କରିପାରୁଛନ୍ତି ।

ଜାପାନ, ଅଷ୍ଟ୍ରେଲିଆ ଏବଂ ଆମେରିକାରେ ଡ୍ରୋନ୍ ଆମ୍ବୁଲାନ୍ସ ବ୍ୟବହାର କରାଗଲାଣି । ଉନ୍ନତ ଦେଶଗୁଡ଼ିକରେ ଆବଶ୍ୟକତା ଦୃଷ୍ଟିରୁ ବହୁତ ଉଚ୍ଚ ଅଟ୍ଟାଳିକା ନିର୍ମାଣ କରାଯାଇଥାଏ । ଏହି ସୁଉଚ୍ଚ ଅଟ୍ଟାଳିକାଗୁଡ଼ିକରେ ବିଭିନ୍ନ ପ୍ରକାର କାର୍ଯ୍ୟାଳୟ ସହିତ ବାସ ଉପଯୋଗୀ ଗୃହ ରହିଥାଏ । ଯଦି ଏହି ସ୍ଥାନରେ ହଠାତ୍ କୌଣସି ବ୍ୟକ୍ତିଙ୍କ ସ୍ୱାସ୍ଥ୍ୟ ସଙ୍କଟାପନ୍ନ ହୁଏ, ତେବେ ଯଥାଶୀଘ୍ର ସଡ଼କ ପାଖକୁ ଆଣି ଆମ୍ବୁଲାନ୍ସ ଈଶ୍ୱରଙ୍କ ଦୂତରୂପେ ରୋଗୀକୁ ବହୁତ କମ୍ ସମୟରେ ଚିକିତ୍ସାଳୟ ପହଁଚାଇ ମୂଲ୍ୟବାନ ଜୀବନ ରକ୍ଷା



କରିପାରେ । ସେହିପରି ଦୁବାଇରେ ବହୁତ ଅଳ୍ପଦିନ ମଧ୍ୟରେ ଡ୍ରୋନ୍ ଟ୍ୟାକ୍ସି ଆରମ୍ଭ ହେବାକୁ ଯାଉଛି । ଏହାଦ୍ୱାରା ଜନସାଧାରଣ ବହୁତ କମ ସମୟରେ ନିଜର ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବେ ।

ଏହିସବୁ ବ୍ୟତୀତ ଡ୍ରୋନ୍ ସବୁକୁ କୃଷିକ୍ଷେତ୍ରରେ ବହୁଳ ବ୍ୟବହାର କରାଯାଉଛି । ଡ୍ରୋନ୍ ମାଧ୍ୟମରେ କୃଷି ବିଜ୍ଞାନୀମାନେ ବହୁତ କମ୍ ସମୟ ମଧ୍ୟରେ ବ୍ୟାପକ ଅଞ୍ଚଳରେ ସବିଶେଷ ଅନୁଧ୍ୟାନ କରିପାରନ୍ତି । ଏହାଦ୍ୱାରା ସେହି ଅଞ୍ଚଳରେ କି ପ୍ରକାର ଚାଷ କରାଗଲେ କୃଷକମାନେ ଯଥେଷ୍ଟ ଉପକୃତ ହେବେ, ସେହି ଅନୁଯାୟୀ ପରାମର୍ଶ ଦିଅନ୍ତି । ଡ୍ରୋନ୍ ମାଧ୍ୟମରେ କୃଷିକ୍ଷେତ୍ର ଉପରେ ନଜର ରଖାଯାଇପାରୁଛି । ଯଦି କୌଣସି ସ୍ଥାନରେ ରୋଗପୋକ ଧରନ୍ତି, ତାହାକୁ ଯଥାଶୀଘ୍ର ନିବାରଣ କରାଯାଇପାରେ । ସାର ଏବଂ କୀଟନାଶକ ଔଷଧର ସିଞ୍ଚନ ମଧ୍ୟ ଡ୍ରୋନ୍ ଦ୍ୱାରା କରାଯାଇପାରୁଛି । ପରିବେଶର ସୁରକ୍ଷା ଓ ପାଣିପାଗ ଅନୁଧ୍ୟାନରେ ମଧ୍ୟ ଡ୍ରୋନ୍ ଯଥେଷ୍ଟ ସାହାଯ୍ୟ କରେ ।

ଏଥିସହିତ ମାଇକ୍ରୋ ଓ ନାନୋ (ବହୁତ କ୍ଷୁଦ୍ର ଆକୃତି) ଡ୍ରୋନ୍ ନିର୍ମାଣ କରାଗଲାଣି । ଏଗୁଡ଼ିକ ଦେଖିବାକୁ ଠିକ୍ ଗୋଟିଏ କଙ୍କି ପରି । ବଡ଼ ବଡ଼ କାରଖାନା ପରିସର ଓ ଗୋଦାମଗୁଡ଼ିକ ଉପରେ ଦୃଷ୍ଟି ରଖିବା ପାଇଁ ଏହାକୁ ବ୍ୟବହାର କରାଗଲାଣି ।

ଚଳଚ୍ଚିତ୍ର ନିର୍ମାଣ କରିବା ସମୟରେ ବିଭିନ୍ନ ଦୃଶ୍ୟ ଅଧିକ ଆକର୍ଷଣୀୟ କରିବା ପାଇଁ ଡ୍ରୋନ୍ ମାଧ୍ୟରେ ବହୁତ ଉପରୁ ଚିତ୍ର ଉତ୍ତୋଳନ କରାଯାଉଛି । ଏପରିକି ବିଭିନ୍ନ ସାମାଜିକ କାର୍ଯ୍ୟକ୍ରମଗୁଡ଼ିକରେ ମଧ୍ୟ ଆକାଶ ମାର୍ଗରୁ ଫଟୋଚିତ୍ର ଉତ୍ତୋଳନ କରିବା ପାଇଁ ଡ୍ରୋନଗୁଡ଼ିକ ବ୍ୟବହାର କରାଯାଉଛି । ଏହିସବୁ ଡ୍ରୋନ୍ ଏଣ୍ଡ୍ରୋଏଡ୍ ଫୋନ୍‌ରୁ ନିୟନ୍ତ୍ରଣ କରାଯାଇପାରୁଛି ।

ବିଭିନ୍ନ ଖେଳ ଅନୁଷ୍ଠିତ ହେବା ସମୟରେ ଖେଳାଳିମାନଙ୍କ ତ୍ରୁଟି ଏବଂ ଖେଳର କଠିନ ନିୟମ ଉପରେ ତୀକ୍ଷଣ ଦୃଷ୍ଟି ରଖିଥାନ୍ତି ବିଚାରକମଣ୍ଡଳୀ । ଗୋଟିଏ ଛୋଟ ମଶା ଆକୃତି ଡ୍ରୋନ୍‌ର କ୍ୟାମେରା ପୂରା ପଡ଼ିଆ ଉପରେ ଉଡ଼ି ଉଡ଼ି ସବୁ ଖେଳାଳିଙ୍କ ଉପରେ କଡ଼ା ନଜର ରଖିପାରୁଛି । ବିଚାରକମଣ୍ଡଳୀର ସଦସ୍ୟମାନେ ଏହିସବୁ ନାନୋ କ୍ୟାମେରା ଦ୍ୱାରା ଖେଳର ନିୟମ ଭଙ୍ଗ କରୁଥିବା ଖେଳାଳିମାନଙ୍କୁ ଉଚିତ ଦଣ୍ଡ ପ୍ରଦାନ କରିବା ସହିତ ଅତ୍ୟନ୍ତ ନିରପେକ୍ଷ ଭାବରେ ଫଳାଫଳ ଘୋଷଣା କରିବାକୁ ସମର୍ଥ ହୋଇପାରୁଛନ୍ତି ।

ଆମେ ବର୍ତ୍ତମାନ ଏତେ ପ୍ରକାରର ଡ୍ରୋନ୍‌କୁ ନିଜ କାମରେ ନିୟୋଜିତ କରୁଛୁ ଯେ ଆଉ କିଛି ବର୍ଷ ପରେ ଆମ ଆଧୁନିକ ଜୀବନଶୈଳୀରେ ଡ୍ରୋନଗୁଡ଼ିକ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିସାରିଥିବେ । ଡ୍ରୋନ୍‌ଗୁଡ଼ିକ କିପରି ଆହୁରି ହାଲୁକା ହେବା ସହିତ ସେମାନଙ୍କ ଇଞ୍ଜିନ୍, ସେନ୍ସର, କ୍ୟାମେରା ଅଧିକ ଉନ୍ନତ ଏବଂ ଦକ୍ଷତାସମ୍ପନ୍ନ ହୋଇପାରିବ, ସେଥିପାଇଁ ଗବେଷଣା ଚାଲୁ ରହିଛି; କିନ୍ତୁ ସବୁଠାରୁ ଖୁସିର କଥା ଯେ ଆମେ ପରସ୍ପରକୁ କ୍ଷତି କରିବା ଉଦ୍ଦେଶ୍ୟରେ ଯେଉଁ ପ୍ରଯୁକ୍ତିବିଦ୍ୟାକୁ ଉଦ୍ଭାବନ କରିଥିଲୁ, ତାହା ବର୍ତ୍ତମାନ ଆମକୁ ଅଶେଷ ପ୍ରକାରରେ ସାହାଯ୍ୟ କରୁଛି ।

*ବେଲେଶ୍ୱର, ନୟାବଜାର, କଟକ-୭୫୩୦୦୪*

# ନୀତି ଆଦର୍ଶେ ଜୀବନ ଗଢ଼ିବା

ଶ୍ରୀ ପୀତାମ୍ବର ମିଶ୍ର

ଆମେ ମନ ଦେଇ ପାଠ ପଢ଼ିବା
ମହାପୁରୁଷଙ୍କ ଜୀବନକୁ ପଢ଼ି
ଚଲାପଥ କେବେ ଯିବାନାହିଁ ହୁଡ଼ି
ନୀତି ଆଦର୍ଶେ ଜୀବନ ଗଢ଼ିବା ।୧ ।

ଆମେ ସକାଳେ ବିଛଣା ଛାଡ଼ିବା
ପିତା, ମାତା, ଗୁରୁ ଜୀବନ୍ତ ଦେବତା
ତାଙ୍କରି ପାଦରେ ନୋଇଁ ଆମ ମଥା
ଶୁଭ ଆଶିଷ ତାଙ୍କରି ଲୋଡ଼ିବା ।୨ ।

ଆମେ ସମୟ ସାଥିରେ ଲଢ଼ିବା
ଆଜିର ପାଇଟି ଆଜି ସାରିଦେବା
ପରିଶ୍ରମ କରି ଶାନ୍ତିରେ ଜୀଇଁବା
ମନ୍ଦଗୁଣ ସବୁ ମନୁ ତଡ଼ିବା ।୩ ।

ପୂଜ୍ୟପୂଜାରେ ଭକତି ବାଢ଼ିବା
ନିଜେ ସୁଧାରିବା ଆଗ ନିଜ ଦୋଷ
ହିତ କାମ କରି ଅରଜିବା ଯଶ
ଜ୍ଞାନ ଉପାର୍ଜନେ ଲାଗି ପଡ଼ିବା ।୪ ।

ଭଲ ମଣିଷ ହେବାକୁ ଅଡ଼ିବା
ମାତୃଭୂମି ମାତୃଭାଷାକୁ ଆମର
ମହାନ କରିବା ଦେଶ ବିଦେଶର
ମଧୁ ବଚନେ ସମ୍ପର୍କ ଯୋଡ଼ିବା ।୫ ।

*ବାଗଦାବିନାୟକପୁର, ପୋ-କିଆପଡ଼ା,*
*ବ୍ରାହ୍ମଣୀ ଗାଁ, ଭଦ୍ରକ-୭୫୬୧୬୫*

# ପ୍ରକୃତିରୁ ମହାଶିକ୍ଷା

ଶ୍ରୀ ପ୍ରଦୋଷ ତ୍ରିପାଠୀ

ବଙ୍ଗଳା ସାହିତ୍ୟ ଜଗତରେ ଲେଖନୀ ଚାଳନା କରି ଖ୍ୟାତି ଅର୍ଜନ କରିଥିବା ମହାନ୍ ଦାର୍ଶନିକ ତଥା ନୋବେଲ ପୁରସ୍କାର ବିଜୟୀ ରବୀନ୍ଦ୍ରନାଥ ଠାକୁର ଭାରତୀୟ ସାହିତ୍ୟ ଜଗତର ଅନ୍ୟତମ କୃତୀ ସନ୍ତାନ । ସେ ଯେତେବେଳେ ସାହିତ୍ୟ ପାଇଁ ନୋବେଲ ପୁରସ୍କାର ପରି ସମ୍ମାନଜନକ ପୁରସ୍କାର ପାଇଲେ, ସେତେବେଳେ ଖାଲି ଭାରତ କାହିଁକି, ଦେଶବିଦେଶରୁ ପ୍ରଶଂସାର ସୁଅ ଛୁଟି ଆସିଲା । ଏପରିକି ଏଥିପାଇଁ ବନ୍ଧୁବାନ୍ଧବଙ୍କ ଠାରୁ ଆରମ୍ଭ କରି ସାଥିପଡ଼ୋଶୀ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଶୁଭେଚ୍ଛା ଜଣାଉଥାନ୍ତି ।

ଏତେ ସମ୍ମାନ ପାଇବା ସତ୍ତ୍ୱେ ଠାକୁରଙ୍କ ମନରେ ହରଷତା ନଥିଲା । କାହିଁକି ନା, ସେ ଅନୁଭବ କରୁଥିଲେ ଯେ ତାଙ୍କ ଘରର ସମ୍ମୁଖରେ ଥିବା ପଡ଼ୋଶୀ ବ୍ୟକ୍ତିଜଣଙ୍କ ତାଙ୍କୁ ଖୁବ୍ ଈର୍ଷା କରୁଛନ୍ତି । ଠାକୁରଙ୍କର ଏଭଳି ସଫଳତା ପାଇଁ ସେ ତାଙ୍କୁ ବଧାଇ କି ଅଭିନନ୍ଦନ ଜଣାଇବା ତ ଦୂରର କଥା, ମୁହାଁମୁହିଁ ହେଲେ ବରଂ ମୁହଁ ଆଡ଼େଇ ଦେଉଥିଲେ । ଏଥିପାଇଁ ରବୀନ୍ଦ୍ରନାଥ ମାନସିକ ସ୍ତରରେ ଖୁବ୍ ବିଚଳିତ ହୋଇପଡୁଥିଲେ । ସେ ବୁଝିପାରୁ ନ ଥିଲେ ଯେ ପଡ଼ୋଶୀଙ୍କ ମନରେ ତାଙ୍କ ପ୍ରତି ଏଭଳି ଅସୂୟା ମନୋଭାବର କାରଣ କ'ଣ ହୋଇପାରେ ! ସେ ଯଦିଓ ଏହି କଥାକୁ ମନ ଭିତରୁ ପାସୋରି ଦେବାକୁ ଚେଷ୍ଟାକରୁଥିଲେ, ତଥାପି ସଫଳ ହୋଇ ପାରୁ ନ ଥିଲେ ।

ସବୁଦିନ ପରି ସେଦିନ ସେ ନଈକୂଳରେ ପ୍ରାତଃ ଭ୍ରମଣ କରୁଥାନ୍ତି । ସେ ଲକ୍ଷ୍ୟକଲେ ଦିଗ୍‌ବଳୟ ଭିତରୁ ସୂର୍ଯ୍ୟ ଉଇଁଆସିଲେ । କିଛି ସମୟ ଭିତରେ ତାଙ୍କର ସୁନେଲି କିରଣ ଧରଣୀ ପୃଷ୍ଠରେ ବିଛାଡ଼ି ହୋଇପଡ଼ିଲା । ପ୍ରକୃତିପ୍ରେମୀ ରବୀନ୍ଦ୍ରନାଥ ଏହା ଲକ୍ଷ୍ୟ କଲାବେଳେ ଦେଖିଲେ ଯେ ସୂର୍ଯ୍ୟଙ୍କ ସୁନେଲି କିରଣ ଯେପରି ପ୍ରବାହିତ ଜଳରାଶି ଉପରେ ପଡୁଥିଲା, ଠିକ୍ ସେହିପରି ପାଖରେ ଥିବା ଖାତ ଭିତରେ ଥିବା କିଛି ଅପରିଷ୍କାର ଜଳରାଶି ଉପରେ ବି ପଡୁଥିଲା । ଏହି ଘଟଣା ତାଙ୍କ ମନରେ ଗଭୀର ରେଖାପାତ କଲା ।

ସେ ଚିନ୍ତାକଲେ– ସୂର୍ଯ୍ୟ ଏତେ ଉଚ୍ଚରେ ଥାଇ ମଧ୍ୟ ନାଳ, ନର୍ଦ୍ଦମା, ଖାତ, ନଦୀ ଓ ସ୍ଥଳଭାଗରେ ସମାନ ଭାବରେ କିରଣ ପ୍ରଦାନ କରୁଛନ୍ତି ଓ ଏଥିରେ କୌଣସି ପକ୍ଷପାତିତା କରୁନାହାନ୍ତି । ତାଙ୍କ ମନରେ ପ୍ରଶ୍ନ ଆସିଲା– ମହାନ୍ କିଏ ହୋଇପାରେ, ସୂର୍ଯ୍ୟ ନା ଧରଣୀବକ୍ଷର ଖାତଖମାରର ଜଳରାଶି ? ସେ ଅନୁଭବ କଲେ ଯେ ବାସ୍ତବରେ ସୂର୍ଯ୍ୟ ହିଁ ମହାନ୍ । ପ୍ରକୃତିରୁ ଆହରଣ କରିଥିବା ଏହି ମହାଶିକ୍ଷା ସତେଯେମିତି ତାଙ୍କ ମନର ବୋଝକୁ ହାଲୁକା କରିଦେଲା ।

ସେ ମନେମନେ ବିଚାରକଲେ ଯେ ଧରଣୀ ପୃଷ୍ଠରେ ସମାନ ଓ ଅସମାନ ରହିବା ଭଳି ସମାଜରେ କିଛି ଭଲ ଓ ମନ୍ଦ ପ୍ରକୃତିର ଲୋକ ରହିଛନ୍ତି । ଏହି ସମାନତା ଓ ଅସମାନତା ଥିବା ସତ୍ତ୍ୱେ ସୂର୍ଯ୍ୟ ଯଦି ପକ୍ଷପାତିତା ନ କରି ସମସ୍ତଙ୍କୁ ସମାନ ଭାବେ କିରଣରାଶି ବିତରଣ କରିପାରୁଛନ୍ତି, ତେବେ ସେ କାହିଁକି ସମାଜରେ ଭଲ ଓ ମନ୍ଦ ପ୍ରକୃତିର ଲୋକଥିବା ସତ୍ତ୍ୱେ ପଡ଼ୋଶୀଙ୍କ ବ୍ୟବହାରରେ ବିଚଳିତ ହେବେ ? ସେ ବରଂ ସୂର୍ଯ୍ୟଙ୍କ ପରି ନିଜେ ଉଦାରତା ଦେଖାଇବା ତାଙ୍କ ପାଇଁ ମହତ୍‌ପଣିଆ ହେବ ।

ସେ ଆଉ ମୁହୂର୍ତ୍ତେ ଥୟଧରି ରହିପାରିଲେ ନାହିଁ ।

ନିଜର ପ୍ରାତଃ ଭ୍ରମଣକୁ ସେଇଠାରେ ସମାପ୍ତ କରି ସେ ଗୃହାଭିମୁଖୀ ହେଲେ । ଫେରିଲାବେଳେ ସେ ଆଉ ନିଜ ଘରକୁ ନ ଫେରି ସିଧା ପଶିଲେ ପଡ଼ୋଶୀଙ୍କ ଘର ଭିତରକୁ ।



ରବୀନ୍ଦ୍ରନାଥଙ୍କୁ ହଠାତ୍ ନିଜ ଘର ଭିତରେ ଦେଖି ହତବାକ୍ ହୋଇପଡ଼ିଲେ ପଡ଼ୋଶୀ । ବହୁଦିନରୁ ମନ ଭିତରେ ଶତ୍ରୁ ବୋଲି ବିବେଚନା କରିଆସୁଥିବା ପଡ଼ୋଶୀ ରବୀନ୍ଦ୍ରନାଥ ଠାକୁରଙ୍କୁ ନିଜ ସମ୍ମୁଖରେ ଦେଖି କ'ଣ କରିବେ, ତାହା ଚିନ୍ତା କରିପାରିଲେନି; କିନ୍ତୁ ରବୀନ୍ଦ୍ରନାଥ ପଡ଼ୋଶୀଙ୍କ ସମସ୍ତ ଚିନ୍ତାରେ ପୂର୍ଣ୍ଣଚ୍ଛେଦ ପକାଇ ଆପେ ହାତଯୋଡ଼ି ପରସ୍ପର ଭିତରେ ରହିଆସିଥିବା ଭୁଲ ବୁଝାମଣା ପାଇଁ ପଡ଼ୋଶୀଙ୍କୁ କ୍ଷମା ମାଗିଲେ ।

ତାଙ୍କର କ୍ଷମାପ୍ରାର୍ଥନାରେ ଘୋର ଲଜ୍ଜିତ ହୋଇ ପଡ଼ୋଶୀ କହିଲେ, ''ବନ୍ଧୁ ! ବାସ୍ତବରେ ଆପଣ ଖୁବ୍ ମହାନ୍ ! ସେଇଥିପାଇଁ ତ ଏତେବଡ଼ ନୋବେଲ ପୁରସ୍କାର ପାଇବା ପାଇଁ ଭାରତରୁ ଆପଣ ଯୋଗ୍ୟ ବିବେଚିତ ହେଲେ । ମୋର ଅଭଦ୍ରୋଚିତ ଆଚରଣ ପାଇଁ ମୋତେ କ୍ଷମା କରିଦିଅନ୍ତୁ ।''

ପଡ଼ୋଶୀଙ୍କୁ ଆଲିଙ୍ଗନ କରିବାବେଳେ ଉଭୟଙ୍କ ଆଖି ଲୁହ ଛଳଛଳ ହୋଇଯାଉଥିଲା । ରବୀନ୍ଦ୍ରନାଥ ଠାକୁର ପରସ୍ପର ଭିତରେ ଥିବା ଭୁଲ ବୁଝାମଣା ପାଇଁ ମନେମନେ ଧନ୍ୟବାଦ ଦେଉଥିଲେ ସୂର୍ଯ୍ୟ ଦେବତାଙ୍କୁ, ଯାହାଙ୍କ ଆଦର୍ଶରେ ସେ ଅନୁପ୍ରାଣିତ ହୋଇଥିଲେ !

*ବରିଷ୍ଠ ଡାକ ଅଧୀକ୍ଷକଙ୍କ କାର୍ଯ୍ୟାଳୟ,*
*କଟକ ନଗରମଣ୍ଡଳ, କଟକ-୭୫୩୦୦୧*

---

# ନୀତି ମୁକ୍ତାମାଳା

- ଯେତେବେଳେ ତୁମର ଲକ୍ଷ୍ୟ ପ୍ରତିଯୋଗୀ ମନୋଭାବରୁ ଦୂରେଇଯାଇ ସହଯୋଗୀ ମନୋଭାବରେ ନିବଦ୍ଧ ହୁଏ, ସେତେବେଳେ ଜୀବନ ଉତ୍ସବମୟ ହୋଇଯାଏ ।
  — ଡ. ଅବଦୁଲ୍ କାଲାମ୍
- ସମୟର ବାଲିରେ ଚାଲିଲେ ହିଁ ପାଦଚିହ୍ନ ପଡ଼ିଯାଏ, ବସିଲେ ନୁହେଁ ।
- କହିଲେ ମୁଁ ଭୁଲିଯିବି, ଦେଖେଇଲେ ମୁଁ ମନେ ରଖିପାରେ; କିନ୍ତୁ ଯଦି ମୋତେ ସାମିଲ କରିବ ମୁଁ ମନେ ରଖିପାରିବି । — ଚୀନ୍ କଥା



# ଶିକ୍ଷକଙ୍କ କଥା ସତ ହେଲା

ଶ୍ରୀ ଘନଶ୍ୟାମ ବୋଇତେଇ

ଆମମାନଙ୍କଠାରୁ ବୟସରେ ଆଉ ମାନ୍ୟରେ ବଡ଼ଥିବା ଲୋକମାନେ ହେଉଛନ୍ତି ଆମର ଗୁରୁଜନ । ଆମେ ସେମାନଙ୍କୁ ଦେଖିଲେ ନମସ୍କାର କରିବା ସାଙ୍ଗକୁ ଭକ୍ତି ମଧ୍ୟ କରିଥାଉ । ସେମାନେ ମଧ୍ୟ ଆମର ଚଳଣିକୁ ମାନି ପ୍ରତି-ନମସ୍କାର ଜଣାଇ ସ୍ନେହଶ୍ରଦ୍ଧା କରିଥାନ୍ତି ।

ବିଦ୍ୟାଳୟମାନଙ୍କରେ ଶିକ୍ଷକ ମହାଶୟ ଶ୍ରେଣୀ ଭିତରକୁ ଗଲାପରେ ଛାତ୍ରଛାତ୍ରୀମାନେ ତାଙ୍କୁ ସମ୍ମାନ ଜଣାଇ ଠିଆ ହୋଇପଡ଼ି ନମସ୍କାର କରିଥାନ୍ତି । ଶିକ୍ଷକ ମହାଶୟ ମଧ୍ୟ ପ୍ରତି-ନମସ୍କାର ଜଣାଇଥାନ୍ତି । ଏହିପରି ଜଣେ ଆଦର୍ଶ ଶିକ୍ଷକଙ୍କ ବିଷୟରେ ଆସ ଆମେ ଜାଣିବା ।

ଆଜିକୁ ଅନେକ ବର୍ଷତଳେ ଜର୍ମାନୀ ଦେଶର କୌଣସି ଏକ ସ୍କୁଲରେ ସେହି ଶିକ୍ଷକ ମହାଶୟ ଚାକିରି କରିଥିଲେ । ପ୍ରତ୍ୟେକ ଦିନ ଶ୍ରେଣୀ ଭିତରକୁ ପଶିବା ପୂର୍ବରୁ ନମସ୍କାର ଭଙ୍ଗୀରେ ଯାଇଥାନ୍ତି, ଶ୍ରେଣୀର କୌଣସି ଛାତ୍ରଛାତ୍ରୀ ଯେତେ ଚେଷ୍ଟାକଲେ ମଧ୍ୟ ତାଙ୍କୁ ପ୍ରଥମେ ନମସ୍କାର କରିପାରନ୍ତି ନାହିଁ । ସେହି ବିଦ୍ୟାଳୟରେ ପଢୁଥିବା ମାର୍ଟିନ ନାମକ ଜଣେ ଛାତ୍ରକୁ ଏକଥା ଜମାରୁ ପସନ୍ଦ ଲାଗୁନଥାଏ । ଶିକ୍ଷକ ମହାଶୟଙ୍କୁ ଏହାର କାରଣ ପଚାରି ବୁଝିବା ପାଇଁ ସେ ସୁଯୋଗ ଅପେକ୍ଷାରେ ରହିଲା ।

ଦିନେ ସେହି ସୁଯୋଗ ଆସିଲା । ଶିକ୍ଷକ ମହାଶୟ ସେହି ଭଙ୍ଗୀରେ ଶ୍ରେଣୀ ଭିତରକୁ ପଶିଲାପରେ ମାର୍ଟିନ୍ ସାହସର ସହିତ ଠିଆ ହୋଇ ପଚାରିଲା ''ମହାଶୟ, ଆପଣ ହେଉଛନ୍ତି ଆମର ଶିକ୍ଷକ ଆଉ ଗୁରୁଜନ । ଆପଣ ଶ୍ରେଣୀକୁ ଆସିବାବେଳେ ଆମେ ପ୍ରଥମେ ନମସ୍କାର ଜଣାଇବା କଥା, ହେଲେ ଆପଣ ଏହାର ବିପରୀତ କାମ କରୁଛନ୍ତି । ଏପରି କରିବାର କାରଣ କ'ଣ ? ଦୟାକରି ଆମକୁ କହିବେ କି ?''

ଛାତ୍ରଟିର ନିର୍ଭୀକପଣିଆ ଦେଖି ଶିକ୍ଷକ କିଛି ସମୟ ନୀରବ ରହି ହସହସ ମୁହଁରେ କହିଲେ, ''ମାର୍ଟିନ୍, ତୁମର ନିର୍ଭୀକପଣ ଦେଖି ଆଉ ପ୍ରଶ୍ନ ଶୁଣି ମୁଁ ବହୁତ ଆନନ୍ଦିତ । ଭାଗ୍ୟରେ ଥିଲେ ଶିକ୍ଷକ ଚାକିରି ମିଳିଥାଏ । ଶିକ୍ଷକ ତୁମମାନଙ୍କୁ ଉଚିତ ଶିକ୍ଷାଦେଇ ଜଣେ ଭଲଛାତ୍ର ଆଉ ଭଲମଣିଷ କରି ଗଢ଼ି ତୋଳିବା ପାଇଁ ଚେଷ୍ଟା କରିଥାନ୍ତି । ଆମେମାନେ ହେଲୁ ଫୁଟିଲା ଫୁଲ । ଯାହା ହେବାର କଥା ହୋଇସାରିଛୁ । ତୁମେମାନେ ହେଲ ଫୁଲକଢ଼ି । ଭବିଷ୍ୟତରେ ତୁମେମାନେ ସବୁ କ'ଣ ହେବ କିଏ କହିପାରିବ ?

ତୁମମାନଙ୍କ ଭିତରେ କେହି ଯୀଶୁଖ୍ରୀଷ୍ଟ, ମହମ୍ମଦ କିମ୍ବା ବୁଦ୍ଧଦେବଙ୍କ ପରି ଯୋଗଜନ୍ମା ମହାପୁରୁଷ ଥାଇପାରନ୍ତି । ସେଇ କଥାକୁ ଭାବି ମୁଁ ଶ୍ରେଣୀ ଭିତରକୁ ପଶିବା ପୂର୍ବରୁ ତୁମମାନଙ୍କୁ ପ୍ରଥମେ ନମସ୍କାର କରି ପଶିଥାଏ । ଏହାହିଁ ହେଉଛି ତୁମ ପ୍ରଶ୍ନର ଉତ୍ତର ।''

ଶିକ୍ଷକଙ୍କ ପାଖରୁ ଠିକ୍ ଉତ୍ତର ପାଇ ମାର୍ଟିନ୍ ଖୁସିହେଲା । ଶ୍ରେଣୀରେ ଖୁସିର ଲହରୀ ଖେଳିଗଲା । ସେଇଦିନଠାରୁ ସେ ହେଲେ ସମସ୍ତଙ୍କର ଅତିପ୍ରିୟ ଆଉ ଆପଣାର ଶିକ୍ଷକ । ସ୍କୁଲର ସମସ୍ତ ଛାତ୍ରଛାତ୍ରୀ ତାଙ୍କୁ ଦେବତା ପରି ଶ୍ରଦ୍ଧା ଆଉ ଭକ୍ତି କଲେ ।

ଭବିଷ୍ୟତରେ ସେହି ଶିକ୍ଷକଙ୍କ କଥା ସତ ହେଲା । ଯେଉଁ ଛାତ୍ରଟି ସେଦିନ ତାଙ୍କୁ ପ୍ରଶ୍ନ ପଚାରିଥିଲା, ସତକୁ ସତ ଭବିଷ୍ୟତରେ ସେ ଜଣେ ମହାପୁରୁଷ ହେଲା । ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ନିକଟରେ ସେ 'ମାର୍ଟିନ୍ ଲୁଥର' ନାମରେ ପରିଚିତ ହେଲେ ।

*ଜନାର୍ଦ୍ଦନପୁର ପାଟଣା, ରାମଚନ୍ଦ୍ରପୁର, କେନ୍ଦୁଝର-୪୩*

---

# ସ୍ୱାସ୍ଥ୍ୟ ପାଇଁ ମହୁର ପ୍ରୟୋଜନୀୟତା

ଡା. ଅଜିତାନନ୍ଦ ଗୋସ୍ୱାମୀ



ମହୁରେ ପ୍ରୋଟିନ, ସମସ୍ତ ପ୍ରକାର ଭିଟାମିନ୍ ଓ ଧାତବ ପଦାର୍ଥ ଯଥା– ଲୌହ, କ୍ୟାଲସିୟମ୍, ଫସ୍‌ଫରସ୍, ମାଙ୍ଗାନିଜ୍, କପର୍ ଓ ପଟାସିୟମ ପ୍ରଭୃତି ରହିଛି । ଏଥିପାଇଁ ଏହା ସର୍ବୋତ୍କୃଷ୍ଟ ସୁଷମ ଖାଦ୍ୟ । ଏଥିପାଇଁ ରୋଗ ଆରୋଗ୍ୟ କରିବା ସହ ରୋଗ ନିରୋଧକ ଭାବେ ମଧ୍ୟ ମହୁ କାମକରେ । ମହୁ ପୂର୍ବରୁ ମହୁମାଛିମାନଙ୍କ ଦ୍ୱାରା ହଜମ ହୋଇଥିବାରୁ ଏହା ସହଜରେ ହଜମ ହୁଏ ଓ ରକ୍ତରେ ମିଶେ । ଏଥିରେ ପ୍ରାକୃତିକ ମିଠା ରହିଛି ଓ ଏହା ଚିନିଠାରୁ ଦ୍ୱିଗୁଣ ଅଧିକ ମିଠା । ମହୁ ଏକମାତ୍ର ଖାଦ୍ୟ, ଯାହାକି ନଷ୍ଟ ହୁଏନାହିଁ ।

## ମହୁର ଆରୋଗ୍ୟକାରୀ ଶକ୍ତି–

୧) ମହୁରେ ଯଥେଷ୍ଟ ପରିମାଣର ଶର୍କରା ଥାଏ । କ୍ଳାନ୍ତ ଲାଗିଲେ ଉଷୁମ ପାଣିରେ ଦୁଇ ଚାମଚ ମହୁ ମିଶାଇ ପିଇଦେଲେ ଶରୀରର କ୍ଳାନ୍ତି ଦୂର ହୁଏ ।

୨) ମହୁରେ ଲୌହଅଂଶ ଥିବାରୁ ଏହାକୁ ଖାଇଲେ ରକ୍ତହୀନତା ଦୂର ହୁଏ ।

୩) ମହୁରେ କ୍ୟାଲସିୟମ ଓ ଫସ୍‌ଫରସ୍ ଥିବାରୁ ଅସ୍ଥି ଦୃଢ଼ ହୁଏ ଏବଂ ସ୍ମରଣଶକ୍ତି ବଢ଼ିଥାଏ । କ୍ରମାଗତ କିଛିଦିନ ଖାଇଲେ ଗଣ୍ଠିବାତ ରୋଗ ଭଲ ହୁଏ ।

୪) କାଗେଜିଲେମ୍ବୁ ରସ ସହ ଦୁଇ ଚାମଚ ମହୁ ଉଷୁମ ପାଣିରେ ମିଶାଇ ଖାଲି ପେଟରେ ପିଇଲେ ସ୍ନାୟବିକ ଦୌର୍ବଲ୍ୟ ଦୂର ହୁଏ । ଚର୍ବି ଅଂଶ ନିୟନ୍ତ୍ରିତ ହୁଏ । ହଜମ ଶକ୍ତି ବୃଦ୍ଧି ପାଇ ଆମ୍ବିଳା ହାକୁଡ଼ି କମେ । ଯକୃତ ରୋଗ ଆରୋଗ୍ୟ ହୁଏ ।

୫) ତୁଳସୀ ପତ୍ର ରସ ସହ ମହୁ ମିଶାଇ ଖାଇଲେ ଶିଶୁର ଜ୍ୱର ଓ କାଶ ରୋଗ ଭଲ ହୁଏ ।

୬) ଡାଳିମ୍ବ ରସ ସହ ମହୁ ମିଶାଇ ଖାଇଲେ ତରଳ ଝାଡ଼ା ଭଲ ହୁଏ ।

୭) ମହୁ ସହ ତ୍ରିଫଳା ଚୂର୍ଣ୍ଣ ମିଶାଇ ଖାଇଲେ ଅଜୀର୍ଣ୍ଣତା ଦୂର ହୁଏ ଓ କ୍ଷୁଧା ବଢ଼ାଏ ।

୮) ଦାନ୍ତ ବିନ୍ଧୁଥିଲେ ମହୁରେ କନା ବୁଡ଼ାଇ ବିନ୍ଧୁଥିବା ଦାନ୍ତରେ ଚାପି ଧରିଲେ ଦାନ୍ତବିନ୍ଧା କମେ ।

୯) ଦୁଇ ପାଖୁଡ଼ା ରସୁଣ ଛେଚି ମହୁ ସହ ମିଶାଇ ଲଗାଇଲେ ମୁଣ୍ଡରେ ରୁପି ଚାଲିଯାଏ ।

୧୦) ଯେକୌଣସି ଚର୍ମକ୍ଷତ ବା ଚର୍ମରୋଗ ପାଇଁ ମହୁ ଘସି ଦେଲେ ଆରୋଗ୍ୟ ହୁଏ ।

୧୧) ଦୁଗ୍ଧ ସହ ମହୁ ମିଶାଇ ଖାଇଲେ ଖାଦ୍ୟନଳୀ ଘା' ଭଲ ହୁଏ ଓ ସୁନିଦ୍ରା ହୁଏ ।

୧୨) ଉଷୁମ ପାଣି ସହ ମହୁ ଓ ଗ୍ଲିସେରିନ୍ ମିଶାଇ ଖାଇଲେ ଗଳା କ୍ଷତ ଭଲ ହୁଏ ।

୧୩) ଉଷୁମ ପାଣି ଏକ ଗ୍ଲାସରେ ଦୁଇ ଚାମଚ ମହୁ ମିଶାଇ ସକାଳେ ଖାଇଲେ କୋଷ୍ଠକାଠିନ୍ୟ ଦୂର ହୁଏ ।

୧୪) ବେଲଫଳ ରସ ସହ ମହୁକୁ ଉଷୁମ କରି ବିନ୍ଧୁଥିବା କାନରେ ପକାଇଲେ ଭଲ ହୁଏ ।




## ବିଶୁଦ୍ଧ ମହୁ ଚିହ୍ନିବାର ଉପାୟ :

୧– ଏକ ଗ୍ଲାସ ପାଣିରେ ଏକ ବୁନ୍ଦା ମହୁ ପକାଇଲେ ଏହା ପାଣିରେ ନ ମିଶି ତଳକୁ ଚାଲିଯାଏ ।

୨– ମହୁରେ ସଳିତାଟିଏ ବୁଡ଼ାଇ ଜାଳିଲେ ଏହା ଜଳେ, ଲିଭେନାହିଁ ।

୩– କପଡ଼ା ବା କାଗଜରେ ମହୁ ଭିଜେ ନାହିଁ କିମ୍ବା ଏହାର ଦାଗ ଲାଗେ ନାହିଁ ।

୪– ଏଥିରେ ମାଛି ପଡ଼ିଲେ ନ ଲାଖି ଉଡ଼ି ଯାଇପାରେ ।

୫– ମହୁକୁ କୁକୁର ଖାଏ ନାହିଁ, କେବଳ ଶୁଙ୍ଘି ପଳାଏ ।

୬– ଏହା ବେଶି ଥଣ୍ଡାରେ ବସିଯାଏ ଓ ଗରମରେ ତରଳିଥାଏ ।

୭– ଆଖିରେ ଏହାକୁ ପକାଇଲେ ପ୍ରଥମେ ପୋଡ଼େ ଓ ପରେ ଥଣ୍ଡା ଲାଗେ ।

ସାବଧାନ– କେତେକ ବ୍ରାଣ୍ଡେଡ୍ ମହୁରେ ଆଣ୍ଟିବାଇଓଟିକ୍ର୍ ପରିମାଣ ଅଧିକ ରହିଛି, ଯାହାକି ସ୍ୱାସ୍ଥ୍ୟ ପକ୍ଷରେ କ୍ଷତିକାରକ ହୋଇଥାଏ ।

*ଅରୁଣୋଦୟ ନଗର, କଟକ-୧୨*

---



ଗୋଟେ ଛୋଟ ବାଳକ ତା'ର ସାଇକେଲଟିକୁ ପାର୍ଲିଆମେଣ୍ଟ ଘର ପାଖରେ ରଖି ଚାଲିବାକୁ ଲାଗିଲା । ଗୋଟିଏ କନେଷ୍ଟବଳ ପୋଲିସ୍ ଆସି ତାକୁ ଅଟେକାଇଲା ଏବଂ କହିଲା– ତୁମେ କାହିଁକି ଏଠାରେ ସାଇକେଲ୍ଟିକୁ ରଖିଲ ? ଏହିବାଟେ ଅନେକ ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି, କ୍ୟାବିନେଟ୍ ମନ୍ତ୍ରୀ ଏବଂ ଅନେକ ରାଜନୈତିକ ଦଳର ନେତା ଯିବାଆସିବା କରନ୍ତି..... ।

ବାଳକଟି ଉତ୍ତରଦେଲା– 'ବ୍ୟସ୍ତ ହୁଅନି, ମୁଁ ମୋ ସାଇକେଲ୍ଟିକୁ ତାଲା ପକେଇଛି ।'

---

**ସା.ଜ୍ଞା ପରୀକ୍ଷାର ଉତ୍ତର–** ୧) ୬ଟି, ୨) ମାଲ୍କମ୍ ଟର୍ଣ୍ଣବୁଲ (Malcolm Turnbul) ୩)- ଆର୍ଥର୍ ୱିନି (Arthur Wynne), ୪) ୧୯୯୦, ୫) ଟେବୁଲ୍ ଟେନିସ୍, ୬) ପି.ଭି. ନରସିଂହ ରାଓ, ୭) ତାରାଶଙ୍କର ବନ୍ଦୋପାଧ୍ୟାୟ, ୮) ସହିଦ ଭଗତ ସିଂହ, ୯) ଗ୍ରେଟ୍ ବ୍ରିଟେନ୍, ୧୦) ଦୋଳପୂର୍ଣ୍ଣିମା ।



## ଘାସର ରଙ୍ଗ ସବୁଜ

ଥରେ ବାଘ ଏବଂ ଗଧର ଯୁକ୍ତି ଚାଲିଥିଲା । ଗଧ କହିଲା– 'ଘାସର ରଙ୍ଗ ହେଉଛି ନେଳି' ଏବଂ ବାଘ କହିଲା- 'ନା, ଘାସ ହେଉଛି ସବୁଜ ।' ଦୁହିଁଙ୍କ ମଧ୍ୟରେ ଏହି କଥାକୁ ନେଇ ଅନେକ ଯୁକ୍ତି ଲାଗିଲା । ଏହି ସମସ୍ୟାର ସମାଧାନ ପାଇଁ ଦୁହେଁ ବଣର ରାଜା ସିଂହ ପାଖକୁ ଗଲେ ।

ସିଂହ ବିଚାରପତି ହୋଇ ସେମାନଙ୍କ କଥାକୁ ବିଚାର କଲେ । ପ୍ରଥମେ ଗଧ କହିଲା– ଘାସର ରଙ୍ଗ ନେଳି । ସିଂହ ରାଜା କହିଲେ 'ହଁ' । ଗଧ କହିଲା– 'ତାହାହେଲେ ବାଘ ମୋ କଥାକୁ ବିଶ୍ୱାସ ନ କରି ସବୁଜ ବୋଲି କହୁଛନ୍ତି, ତାଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା କରନ୍ତୁ ।' ସିଂହ ମହାରାଜ ମଧ୍ୟ ଆଦେଶ ଦେଲେ ଓ ବାଘକୁ ୧ ବର୍ଷ ଜେଲ ଦଣ୍ଡ ଦିଆଗଲା ।



ଏକବର୍ଷ ପରେ ବାଘ ଆସିଲା ଏବଂ ସିଂହ ମହାରାଜାଙ୍କୁ ପଚାରିଲା– 'ମହାରାଜ ଘାସର ରଙ୍ଗ ସବୁଜ ନା ନାହିଁ?' ସିଂହ କହିଲେ– ଘାସର ରଙ୍ଗ ସବୁଜ । ତା'ହେଲେ ତୁମେ ମୋତେ ଜେଲର ଦଣ୍ଡ କାହିଁକି ଦେଲ !– ବାଘ କହିଲା । ସିଂହ ମହାରାଜ କହିଲେ, 'ମୁଁ ତୁମକୁ ଘାସ ନେଳି କି ସବୁଜ ପାଇଁ ଦଣ୍ଡ ଦେଇନି । ମୁଁ ଏଇଥିପାଇଁ ଦଣ୍ଡ ଦେଲି ଯେ ତୁମେ ବଳବାନ୍ ଓ ବୁଦ୍ଧିମାନ ହେଇ ମଧ୍ୟ ତୁମେ ଜାଣ ସେ ଗଧ ଭୁଲ୍ କହୁଛି, ତୁମେ ତାହା ଜାଣି ମଧ୍ୟ ତା' ସହ ଯୁକ୍ତି କଲ । ସେଥିପାଇଁ ତୁମକୁ ଦଣ୍ଡ ମିଳିଲା ।'

ନୀତିବାଣୀ– କେବେ ବି ଅଜ୍ଞାନ, ମୂର୍ଖଙ୍କ ସହିତ ଯୁକ୍ତି କରିବା ଠିକ୍ ନୁହେଁ; ଯୁକ୍ତି କଲେ ତୁମକୁ ୫ବର୍ଷ ଜେଲ ଦଣ୍ଡ ଭୋଗିବାକୁ ପଡ଼ିବ ।

(ସଂଗୃହୀତ)

---

## ପଇଡ଼ ପାଣି ପିଇବାର ଉଚିତ ସମୟ

ପଇଡ଼ ପାଣି ଶରୀର ପାଇଁ ଲାଭଦାୟକ ହୋଇଥାଏ । ଯଦି ଠିକ୍ ସମୟରେ ଆମେ ପଇଡ଼ ପାଣି ପିଇବା, ତେବେ ଏହାର ଲାଭ ଦୁଇଗୁଣ ହୋଇଥାଏ । ଆସନ୍ତୁ ଜାଣିବା ପଇଡ଼ ପାଣି ପିଇବାର ଠିକ୍ ସମୟ ବିଷୟରେ....

**୧.** ସକାଳେ ଖାଲିପେଟରେ ପଇଡ଼ ପାଣି ପିଇବା ଫଳପ୍ରଦ ହୋଇଥାଏ । ଏଥିରେ ଥିବା ପୋଷକ ତତ୍ତ୍ୱ ଶରୀରରେ ରୋଗ ପ୍ରତିରୋଧକ ଶକ୍ତି ବଢ଼ିବା ସହ ଓଜନ୍ କମ୍ ହୋଇଥାଏ ।

**୨.** ଗର୍ଭବତୀ ମହିଳାଙ୍କୁ ପଇଡ଼ ପାଣି ପିଇବାକୁ ପରାମର୍ଶ ଦିଆଯାଏ । ଏହାର କାରଣ ହେଉଛି ଗର୍ଭବତୀ ମହିଳା ପଇଡ଼ ପାଣି ପିଇବା ଦ୍ୱାରା ବଦହଜମୀ ଓ କୋଷ୍ଠକାଠିନ୍ୟରୁ ମୁକ୍ତି ମିଳିଥାଏ ।

**୩.** ଭୋଜନ ପୂର୍ବରୁ ପଇଡ଼ ପାଣି ପିଇବା ଉଚିତ । ଫଳରେ କମ୍ ଖାଦ୍ୟ ଖାଇବା ସହ ପାଚନ ପ୍ରକ୍ରିୟା ଠିକ୍ ହୋଇଥାଏ ।

**୪.** ନିୟମିତ ପଇଡ଼ ପାଣି ପିଇବା ଦ୍ୱାରା ରକ୍ତଚାପ ନିୟନ୍ତ୍ରିତ ରହିଥାଏ ।

**୫.** ଶୟନ ପୂର୍ବରୁ ପଇଡ଼ ପାଣି ପିଇଲେ ଥକ୍କାପଣ ଓ ଚିନ୍ତା ଦୂର ହେବା ସହ ମସ୍ତିଷ୍କ ସୁସ୍ଥ ରହିଥାଏ ।

# ସତୀ ନର୍ମଦା

## ପଣ୍ଡିତ ନାରାୟଣ ଶତପଥୀ

ପୂର୍ବକାଳରେ ଉଜ୍ଜୟିନୀଠାରେ ସୁବର୍ଣ୍ଣ ନାମରେ ଜଣେ ବ୍ୟକ୍ତି ଥିଲେ । ତାଙ୍କର ପଦ୍ମିନୀ ନାମରେ ପତ୍ନୀ ଥିଲେ । ସେ ଗୋଟିଏ କନ୍ୟାସନ୍ତାନ ଜନ୍ମ ଦେଇ ଇହଲୀଳା ସମ୍ବରଣ କଲେ । ସେହି କନ୍ୟାର ନାମ ରଖିଲେ ନର୍ମଦା । ପିତା ସୁବର୍ଣ୍ଣ ସେହି କନ୍ୟାଟିର ଲାଳନ-ପାଳନ ଦାୟିତ୍ୱ ନେଲେ । ବାସ୍ତବରେ ସେ ଥିଲେ କନ୍ୟା ନର୍ମଦାର ପିତା ଓ ମାତା ।

କ୍ରମେ କ୍ରମେ ଝିଅଟି ବଡ଼ ହେଲା । ୧୨ ବର୍ଷ ବୟସ ହୋଇଗଲା । ଏହି ସମୟରେ ପିତା ସୁବର୍ଣ୍ଣ ଚିନ୍ତାକଲେ 'ବସି ଖାଇଲେ ନଈବାଲି ସରେ ।' ଏହି ନ୍ୟାୟରେ ବିନା ରୋଜଗାରରେ ଘରେ ବସି ରହିଲେ ଧନ ସବୁ ସରିଯିବ । ଏଣୁ ମୁଁ ବିଦେଶକୁ ଯାଇ କିଛି ବେପାର ବଣିଜ କରି ପଇସା ରୋଜଗାର କରି ଆଣେ । ଏହା ଭାବି ସେ ବୋଇତରେ ବସି ବଣିଜ ଆଶାରେ ବିଦେଶକୁ ଗଲେ । ସାଗରରେ ହଠାତ୍ ଝଡ଼ବତାସ ଆସିଲା । ବୋଇତକୁ ନେଇ ଗୋଟିଏ ପାହାଡ଼ରେ ପିଟିଦେଲା । ବୋଇତ ବୁଡ଼ିଗଲା ଓ ସୁବର୍ଣ୍ଣ ମୃତ୍ୟୁବରଣ କଲେ । କିନ୍ତୁ ଯିବା ପୂର୍ବରୁ ପିତା ସୁବର୍ଣ୍ଣ ଝିଅ ପାଖରେ ଗୋଟିଏ ଦାସୀ ଛାଡ଼ିଦେଇ ଯାଇଥିଲେ । ତାହାର ନାମ ଚଞ୍ଚଳା ।

କିଛିଦିନ ପରେ ନର୍ମଦା ପିତାଙ୍କର ମୃତ୍ୟୁ ଖବର ଶୁଣି ଅତି ମ୍ରିୟମାଣ ହୋଇପଡ଼ିଲା । ମାତ୍ର ଦାସୀ ଚଞ୍ଚଳାର ଆଶ୍ୱାସନା, ସାନ୍ତ୍ୱନା ପରେ ଶାନ୍ତ ହେଲା ଓ ଦୁଃଖେସୁଖେ କାଳାତିପାତ କଲା । କ୍ରମେ ଝିଅ ନର୍ମଦା ଯୌବନରେ ପଦାର୍ପଣ କଲା ଏବଂ ପୂର୍ବ ରୂପଠାରୁ ଆହୁରି ସୁନ୍ଦର ଦେଖାହେଲା । କାରଣ 'ମର୍କଟୀ ଯୌବନେ ରମ୍ଭା' । ଦିନକର ଘଟଣା– ନର୍ମଦା ଅଗଣାରେ ବସିଛି ରାସ୍ତାରେ ଗୋଟିଏ ଦମ୍ପତି ଯାଉଛନ୍ତି । ପାଖରେ ଗୋଟିଏ ଛୋଟ ଛୁଆ ଅଛି । ଛୁଆଟିକୁ ମା' ଧରିଛି । ଏଣେ ଛୁଆଟି ବାପା ପାଖକୁ ଯିବାପାଇଁ ଇଚ୍ଛାକଲେ ମା' ବାପାଙ୍କୁ ଦେଉଛନ୍ତି, ପୁଣି ମା' ପାଖକୁ ଯିବାପାଇଁ ଇଚ୍ଛା କଲେ ମା' ଧରୁଛନ୍ତି । ଏହିପରି ବାପା ଥରେ ମାଆ ଥରେ ଛୁଆଟିକୁ ଧରାଧରି ହୋଇ ଆନନ୍ଦରେ ଯାଉଛନ୍ତି ।

ଏହିପରି ଦୃଶ୍ୟ ଦେଖି ନର୍ମଦା ମନେମନେ ଭାବି କାନ୍ଦ କାନ୍ଦ ହୋଇଗଲା । ନର୍ମଦାର ଏହି ଅବସ୍ଥା ଦେଖି ଦାସୀ ଚଞ୍ଚଳା ମନରେ କରୁଣା ଜାତହେଲା ଏବଂ ନର୍ମଦାକୁ ପଚାରିଲା– ମା', ନର୍ମଦା କାନ୍ଦୁଛ କାହିଁକି ? କ'ଣ ବିବାହ କରିବାକୁ ଇଚ୍ଛା ? ସ୍ୱାମୀଦେବତା ଆସିବେ ? ମା' ହେବାପାଇଁ ଇଚ୍ଛା ହେଉଛି ? ଇତ୍ୟାଦି କେତେ କ'ଣ । ଝିଅ ନର୍ମଦା କେବଳ 'ହୁଁ' କହିଦେଇ ମନମାରି ବସି ରହିଲା । କିଛିଦିନ ପରେ ନର୍ମଦା ଦାସୀ ଚଞ୍ଚଳାକୁ କହିଲା, ''ମତେ ଟିକିଏ ଗଙ୍ଗାଜଳ ଦେଇପାରିବ ?'' ଏହାଶୁଣି ଚଞ୍ଚଳା ଗଙ୍ଗାଜଳ ଆଣିଦେଲା ।

ନର୍ମଦା ଗଙ୍ଗାଜଳକୁ ହାତରେ ଧରି ଶପଥ କରି ଭଗବାନଙ୍କୁ କଡ଼ା ସ୍ୱରରେ କହିଲା– ହେ ପ୍ରଭୁ ! ମୋତେ ଦୁଃଖ ଓ ଦୁଃଖ ଦେଇଚାଲିଛ । ଜନ୍ମ ହେଉ ହେଉ ମା' ଚାଲିଗଲା । ମୁଁ ମା' ମୁଖ ଦେଖିପାରିଲି ନାହିଁ । ଏବେ ଯୁବା ବୟସରେ ବାପାଙ୍କୁ ଛଡ଼ାଇନେଲ । ମୁଁ କ'ଣ ମା' ହୋଇପାରିବି ନାହିଁ ? ମୋତେ କିଏ ବିବାହ କରିବ । ମୋର ବିବାହ ମୁଁ ନିଜେ ନିଷ୍ପତ୍ତି ନେବି । କାଲି ପ୍ରଭାତରୁ ମୁଁ ଯେଉଁ ପୁରୁଷକୁ ଦର୍ଶନ କରିବି, ସେ ମୋର ସ୍ୱାମୀ ହେବେ । ଏହା କହି ନୀରବରେ ରହିଲା ।

ନର୍ମଦାର ଏପରି ଅବସ୍ଥା ଦେଖି ଚଞ୍ଚଳା ଦାସୀ ବିମର୍ଷ ବଦନରେ କହିଲା, 'ହେ ନର୍ମଦା, ତୁମ୍ଭେ ଏପରି ଶପଥ କାହିଁକି କରୁଛ ? ଏମିତି ଭୁଲ୍ କାମ କାହିଁକି କରୁଛ ? ଯଦି ବୁଢ଼ା, କେମ୍ପା, ଛୋଟା ବା ଅକର୍ମଣ୍ୟ ଲୋକ ଦେଖାହୁଏ, ତେବେ କ'ଣ କରିବ ?' ତହୁଁ ନର୍ମଦା କହିଲା, 'ହଁ ହଁ ମୁଁ ନିଶ୍ଚୟ ବରଣ କରିବି । କାରଣ ପବିତ୍ର ଗଙ୍ଗାଜଳ ଛୁଇଁ ଶପଥ କରିଛି, ଏଥିରୁ ଅନ୍ୟଥା ହେବନାହିଁ । ତେଣିକି ମୋ ଭାଗ୍ୟରେ ଯାହା ଥିବ ।' ଏହା କହି ରାତ୍ରିରେ ନିଦ୍ରାଗଲା, ମାତ୍ର ମନ ମଧ୍ୟରେ ଉତ୍କଣ୍ଠା ଥାଏ । ରାତି ପାହିଲେ ନୂତନ ସ୍ୱାମୀଙ୍କ ଦର୍ଶନ ମିଳିବ ।



ଏହାର ପବିତ୍ର ଶପଥ ଦେଖି ଭଗବାନ ବିଷ୍ଣୁ ଇତ୍ୟାଦି ଦେବତା ବିଚାର କଲେ– ନର୍ମଦାର ଅବସ୍ଥା କ'ଣ ହେବ ? ପରୀକ୍ଷା କରିବା ଉଦ୍ଦେଶ୍ୟରେ ଦେବତାମାନେ ଭଗବାନ୍ ଶିବଙ୍କୁ କହିଲେ,'' ଆପଣ ଜଣେ କୁଷ୍ଠରୋଗୀ ବେଶରେ ଯାଆନ୍ତୁ ।'' ତହୁଁ ଶିବ କହିଲେ– ତୁମର ମାତା ପାର୍ବତୀଙ୍କୁ କୁହନ୍ତୁ, ସେ ଯଦି ଛାଡ଼ିବେ, ମୁଁ ଯିବି, ମୋର କିଛି ଆପତ୍ତି ନାହିଁ । ଏହାଶୁଣି ଦେବତାମାନେ ମାତା ପାର୍ବତୀଙ୍କ ପାଖକୁ ଯାଇ କହିଲେ, ''ପ୍ରଭୁ ଭଗବାନ ଶିବ ମଣିପୁରକୁ ଯିବେ ଯୋଗ ସାଧନା ପାଇଁ ।'' ତହୁଁ ପାର୍ବତୀ କହିଲେ, ''ଯାଆନ୍ତୁ ସେ ତ ଯୋଗୀଲୋକ, ଯୋଗ କରିବେ, ଏଥିରେ ମୋର କିଛି ଆପତ୍ତି ନାହିଁ । ହେଲେ ଯଥାଶୀଘ୍ର ଫେରିଆସିବେ ।'' ଏହାପରେ ଶିବ ଗୋଟିଏ କୁଷ୍ଠରୋଗୀ ବେଶରେ ନର୍ମଦାର ଘର ଦୁଆରେ ଚୁପ୍ ହୋଇ ବସିରହିଲେ । ଏହା ଭିତରେ ରାତି ପାହିଗଲା । ନର୍ମଦା ଶଯ୍ୟା ତ୍ୟାଗକରି ଦ୍ୱାର ଖୋଲି ଆସି ଦର୍ଶନ କଲା– ଜଣେ ପକ୍ୱକେଶୀ, ବୟସ୍କ ବ୍ୟକ୍ତି, ଜୀର୍ଣ୍ଣଶୀର୍ଣ୍ଣ ଶରୀର, ସମସ୍ତ ଶରୀର ଘାଆରେ ଜର୍ଜରିତ, ଆଖିରୁ ମିଦିଆ ବୋହୁଛି, ପାଟିରୁ ଲାଳ ବୋହୁଛି, ଦେହସାରା ମାଛି ଭଣଭଣ ଓ ଉତ୍କଟ ଗନ୍ଧ ବାହାରୁଛି ।

ଯାହାହେଉ ସିଏ ତ ସ୍ୱାମୀ ହେବ, ଏହା ଭାବି ସିନ୍ଦୂର ଡବା ଆଣି ଉକ୍ତ ବ୍ୟକ୍ତିକୁ କହିଲା– ହେ ପ୍ରଭୁ, ତୁମ ହାତରେ ସିନ୍ଦୂର ନେଇ ମୋ ମଥାରେ ଲଗାଇଦିଅ । ତୁମେ ଆଜିଠାରୁ ମୋର ଇହକାଳ ପରକାଳର ଦେବତା ହେଲ । ତହୁଁ ଛଦ୍ମବେଶୀ ଶିବ କହିଲେ– ମୋର ତ ହାତ ଚଳୁନାହିଁ କି ଉଠୁନାହିଁ । କେମିତି ସିନ୍ଦୂର ମଥାରେ ଲଗାଇବି ? ଏହାଶୁଣି ନର୍ମଦା ନିଜେ ତାଙ୍କ ହାତକୁ ଧରି ସିନ୍ଦୂର ନେଇ ନିଜ ମଥାରେ ଲଗାଇଦେଲା । ଗୋଡ଼ହାତ ଧୋଇଦେଇ ପୋଛିଦେଇ ଘରକୁ ନେଇ ସଫାସୁତୁରା କରାଇ ସୁସ୍ୱାଦୁ ଖାଦ୍ୟପାନୀୟ ଦେଇ ସେହିଦିନଠାରୁ ସ୍ୱାମୀଙ୍କ ପାଖେ ପାଖେ ରହି ସେବାଶୁଶ୍ରୂଷା କରିବାରେ ଲାଗିଲା ଏବଂ ଯତ୍ନର ସହିତ ଚିକିତ୍ସା କରିଚାଲିଲା; କିନ୍ତୁ ମନ ମଧ୍ୟରେ ବିଧାତାଙ୍କୁ ଦୁଃଖ ଜଣାଉଥାଏ ।

ଏଣେ ଦେବତାମାନେ ତା' ଦୁଃଖ ସହି ନ ପାରି ଅଶ୍ୱିନୀକୁମାର ଦ୍ୱୟଙ୍କୁ ପଠାଇଲେ । ସେ ମଧ୍ୟ ନିଜର ରୂପ ବଦଳାଇ ଆସି ନର୍ମଦାଙ୍କ ପାଖରେ ପହଞ୍ଚି ଚିକିତ୍ସା ବିଷୟରେ ଜଣାଇଲେ । ସେ ନର୍ମଦାଙ୍କୁ କହିଲେ– ତୁମେ ଅକୁଣ୍ଠ ଚିତ୍ତରେ ସ୍ୱାମୀଙ୍କ ଦେହରୁ ପୂଜ, ରକ୍ତ ନିଜ

ଆଙ୍ଗୁଳିରେ ଧରି ଯଦି ପାନ କରିବ, ତେବେ ତୁମ ସ୍ୱାମୀ ଅଚିରେ ଭଲ ହୋଇଯିବେ । ଏହାଶୁଣି ନର୍ମଦା ଆଗ୍ରହ ମନରେ ପୂଜ-ରକ୍ତ ଧରି ପାନ କରିବାକୁ ଉଦ୍ୟତ ହେଲା । ଠିକ୍ ଏହି ସମୟରେ ଶିବ କହିଲେ- ପୂଜରକ୍ତ ପିଅନାହିଁ, ମୋ ଦେହ ଭଲହୋଇଗଲା । ସତକୁ ସତ ସେ ଆରୋଗ୍ୟ ହୋଇ ଯୁବକରେ ପରିଣତ ହେଲେ । ଏହାପରଠାରୁ ନର୍ମଦା ଆନନ୍ଦର ସହିତ ସ୍ୱାମୀଙ୍କ ପାଖରେ ରହି ସମୟ ବିତାଇବାକୁ ଲାଗିଲା ।

କିଛିଦିନ ପରେ ଏମାନଙ୍କଠାରୁ କନ୍ୟାସନ୍ତାନଟିଏ ଜାତ ହେଲା । ତା'ର ନାମ ଦିଆଗଲା କାବେରୀ । ଏଣେ ପାର୍ବତୀ ଦେବସଭାରେ ପହଞ୍ଚି କହିଲେ– ମୋର ସ୍ୱାମୀ ମହାଦେବ କୁଆଡ଼େ ଗଲେ ? ମୋତେ କହିଥିଲେ– ଯୋଗ କରିବା ପାଇଁ ଯାଇଛନ୍ତି, ଶୀଘ୍ର ଫେରିଆସିବେ । କାହିଁ କୁଆଡ଼େ ଗଲେ ? ଶୀଘ୍ର ଆଣିଦିଅ, ନଚେତ୍ ମୁଁ ଏଇକ୍ଷଣି ସ୍ୱର୍ଗପୁରକୁ ଧ୍ୱଂସ କରିଦେବି ଓ ତତ୍‌ସହିତ ଦେବତାମାନଙ୍କୁ ଭସ୍ମ କରିଦେବି ।

ଏହାଶୁଣି ଦେବତାମାନେ ଅନନ୍ୟୋପାୟ ହୋଇ ଦେବର୍ଷି ନାରଦଙ୍କୁ ପଠାଇଲେ । ନାରଦ ମଧ୍ୟ ବ୍ରାହ୍ମଣ ବେଶରେ ନର୍ମଦାଙ୍କ ପାଖରେ ପହଞ୍ଚି କହିଲେ– ମୁଁ ଜଣେ ବ୍ରାହ୍ମଣ । ତୁମଠାରୁ କିଛି ନେବାକୁ ଆସିଛି, ଦେବ ତ ! ତହୁଁ ନର୍ମଦା କହିଲେ– ହଁ ମୁଁ ନିଶ୍ଚୟ ଦେବି । ଦୁଇଟି ଜିନିଷ ବ୍ୟତୀତ ଯାହା ମାଗିବ ଦେବି । ତାହା ହେଲା– ପ୍ରଥମେ ମୋର ସ୍ୱାମୀ ଓ ଦ୍ୱିତୀୟରେ ମୋର ସତୀତ୍ୱ । ଏହିପରି କଠୋର ବଚନ ଶୁଣି ନାରଦ କହିଲେ– ତେବେ ଥାଉ, ମୁଁ ଆଉକେବେ ଆସି ଦାନ ମାଗିବି । ଏହାଶୁଣି ନର୍ମଦା ସତୀତ୍ୱ ବଳରେ ଜାଣିପାରି କହିଲେ– ତୁମ୍ଭେ ବାସ୍ତବରେ ବ୍ରାହ୍ମଣ ନୁହଁ । କୌଣସି ଛଦ୍ମବେଶରେ ଆସିଛ । ଯଦି ପ୍ରକୃତ ଛଦ୍ମବେଶରେ ଆସିଥାଅ, ତେବେ ତୁମ୍ଭେ ପଥର ହୋଇଯାଅ । ସଙ୍ଗେ ସଙ୍ଗେ ବ୍ରାହ୍ମଣ ବେଶଧାରୀ ନାରଦ ପଥର ହୋଇଗଲେ ।

ନାରଦଙ୍କର ଏପରି ଅବସ୍ଥା ଦେଖି ଭଗବାନ ବିଷ୍ଣୁ ଆଦି ଦେବତା ସ୍ୱର୍ଗରୁ ଓହ୍ଲାଇଆସିଲେ । ଶିବ ମଧ୍ୟ ବେଶ ବଦଳାଇ ନିଜ ରୂପରେ ଠିଆହେଲେ । ତହୁଁ ବିଷ୍ଣୁ କହିଲେ– ହେ ନର୍ମଦା ! ତୁମ୍ଭେ ଜଣେ ସତୀ ନାରୀ । ତୁମର ମୋକ୍ଷ ସୁନିଶ୍ଚିତ । ଆଜିଠାରୁ ମର୍ତ୍ତ୍ୟର ଲୋକେ ତୁମ୍ଭଙ୍କୁ ପରମପାବନୀ ନଦୀ ନାମରେ ଜାଣିବେ ।

ଏହା କହି ବିଷ୍ଣୁ ନର୍ମଦା ଉପରେ କିଛି ଗଙ୍ଗାଜଳ ଛିଞ୍ଚିଦେବାରୁ ସେ ସେହିଠାରେ ନଦୀ ହୋଇ ବୋହିଗଲା । ମା' ନର୍ମଦାର ଅବସ୍ଥା ଦେଖି ତା'ର କନ୍ୟା କାବେରୀ ଆସି କହିଲା– ମୋର ଅବସ୍ଥା କ'ଣ ହେବ ? ଠିକ୍ ଏତିକିବେଳେ ବିଷ୍ଣୁ ପୁନଶ୍ଚ କିଛି ଗଙ୍ଗାଜଳ କାବେରୀ ଉପରେ ଛିଞ୍ଚିଦେବାରୁ ସେ ମଧ୍ୟ ନର୍ମଦା ନଦୀରୁ ଗୋଟିଏ ଧାର ହୋଇ ବୋହିଗଲା । ଏହିପରି ଭାବେ ନର୍ମଦା ଓ କାବେରୀ ଦୁଇଟି ନଦୀ ଉତ୍ପତ୍ତିହେଲେ ଏବଂ ପବିତ୍ର ନଦୀ ନାମରେ ଜଗତ ବିଦିତ ହେଲେ । ଏଣୁ ବେଦରେ ସଂକଳିତ ହୋଇଛି ଯଥା–

**ଗଙ୍ଗେଚ ଯମୁନେଚୈବ ଗୋଦାବରୀ ସରସ୍ୱତୀ**
**ନର୍ମଦେ ସିନ୍ଧୁ କାବେରି ଜଳେଽସ୍ମିନ୍ ସନ୍ନିଧ ଭବ ।**

*ସୁକିନ୍ଦା, ଯାଜପୁର-୭୫୫୦୧୮*

---




ଅନୁମାନ କରି କୁହ, ଯଦି ଲଞ୍ଚରେ ଡବ୍ଲ୍ୟୁ ହୁଏ, ଗାଡ଼ିରେ ଏଲ୍ ହୁଏ, ସେହିପରି ଉଡ଼ାଜାହଜରେ କେଉଁ ଅକ୍ଷର ଲାଗିବ ? *(ଉତ୍ତର ୪୬ ପୃଷ୍ଠାରେ)*

## ଧରା ଆମ ଘର

ଶ୍ରୀ ନୀଳମଣି ଚାନ୍ଦ

ଜନମ ନେଇଛି ଓଡ଼ିଶା ରାଇଜେ
ଜାଣେ ଓଡ଼ିଶା ମୋ ଘର,
'ମୋ ଦେଶ ଭାରତ ମହାନ୍ ସିନାରେ'
କହେ ମୁଁ ହଜାର ଥର ।
ପଢ଼ିଗଲି ଖୋଲି ଆଟଲାସ୍‌ଟିକୁ
ରହିଥିଲା ଦେଶ କେତେ,
ଗ୍ଲୋବ୍ ଘୂରିଲା ସେହିପରି ଥିଲା
ଦେଶ ନାଆଁ ସେତେ ସେତେ ।
କେତେ ଯେ 'ସାଗର' ଆଉ 'ମହାଦେଶ'
ଭାବିଲେ ଆଶ୍ଚର୍ଯ୍ୟ ଲାଗେ,
ଛୋଟିଆ ରାଇଜ ଆମରି 'ଓଡ଼ିଶା'
ଏତେ ବଡ଼ ବିଶ୍ୱ ଆଗେ ।
ଆମ ପରିଚୟ 'ମଣିଷ ସିନାରେ'
ଯହିଁ ଥାଉ ଯେଣେ ଯାଉ,
ଭାଷାର ହୋଇଲେ ବିନିମୟ ସିନା
ଆମେରେ ଆନନ୍ଦ ପାଉ ।
ଆମ 'ଜନ୍ମସ୍ଥାନ' ଆମ 'ଶିକ୍ଷାସ୍ଥଳୀ'
'କର୍ମଭୂମି' ସିନା ଭିନ୍ନ
ସେ ଠିକଣା ନୁହେଁ ଆମ ପରିଚୟ
ସେ ସମୟ ବାଲିଚିହ୍ନ ।
ବିଶାଳ ବିଶ୍ୱର କଥା ଭାବିଦେଲେ
ସଂକୀର୍ଣ୍ଣତା ଦୂର ହୁଏ,
'ଧରା ଆମ ଘର' କହିଲେ ନୟନୁ
ଆନନ୍ଦ ଅଶ୍ରୁ ଯେ ବୁହେ ।

୨୭, ମନ୍ତ୍ର ମାନୋର, ଗୋଠପାଟଣା, ଭୁବନେଶ୍ୱର-୩




## ବିଜ୍ଞାନ ପରୀକ୍ଷା

ପୂଜାରାଣୀ ମଲ୍ଲିକ

୧ । ଜିନ୍ ଶବ୍ଦ ପ୍ରଥମେ କିଏ ଉଦ୍ଭାବନ କରିଥିଲେ ?

୨ । ଡାକଟିକେଟର ପ୍ରଚଳନ ପ୍ରଥମେ କେଉଁଠି ହୋଇଥିଲା ?

୩ । ପ୍ରେସର୍‌କୁକର୍ କିଏ ବାହାର କରିଥିଲେ ?

୪ । କେଉଁ ଗ୍ରହ ପୂର୍ବରୁ ପଶ୍ଚିମକୁ ଘୂରିଥାଏ ?

୫ । ରେଟିନୋଲ୍ କେଉଁ ଭିଟାମିନ୍‌କୁ ବୁଝାଏ ?

୬ । ୟୁରାନସ୍ ଗ୍ରହର ସର୍ବବୃହତ୍ ପ୍ରାକୃତିକ ଉପଗ୍ରହର ନାମ କ'ଣ ?

୭ । ପ୍ରିଜିମ୍ ନିର୍ମାଣ କରିବା ପାଇଁ କେଉଁପ୍ରକାର କାଚ ବ୍ୟବହାର କରାଯାଇଥାଏ ?

୮ । ପଠାଣି ସାମନ୍ତଙ୍କ ଦ୍ୱାରା ପ୍ରଣୀତ ମହାର୍ଘ ଗ୍ରନ୍ଥ 'ସିଦ୍ଧାନ୍ତ ଦର୍ପଣ' କେତେ ଶ୍ଳୋକବିଶିଷ୍ଟ ?

୯ । ଜଣ୍ଡିସ୍ (Jaundice) ଶରୀରର କେଉଁ ଅଙ୍ଗକୁ ଆକ୍ରାନ୍ତ କରିଥାଏ ?

୧୦ । FM ର ପୂର୍ଣ୍ଣରୂପଟି କ'ଣ ?

*+୩ ବିଜ୍ଞାନ, ଡିମିରି, ନୋଦା, କଟକ*

*(ଉତ୍ତର ୩୯ ପୃଷ୍ଠାରେ)*

# କାରିଗର

ଡା. ମହାପାତ୍ର ଆନନ୍ଦଶଙ୍କର ମିଶ୍ର

ଓଡ଼ିଶା ପୋଲିସ୍ ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଶ୍ୟାମାପଦ ମୁଖାର୍ଜୀ ପୁରୀର ସ୍ୱର୍ଗଦ୍ୱାର ଶ୍ମଶାନଠାରେ ମିସେସ୍ ସାବିତ୍ରୀ ପଟ୍ଟନାୟକଙ୍କ ଚିତାର ଲେଲିହାନ ଶିଖା ଆଡ଼କୁ ଚାହିଁରହିଥାନ୍ତି । ତାଙ୍କଭଳି ଜଣେ ଶକ୍ତ ପୋଲିସ୍ ଅଧିକାରୀଙ୍କ ଆଖିରୁ ଲୁହଧାର ବୋହିଯାଉଥାଏ ।

ମିସେସ୍ ପଟ୍ଟନାୟକ ଥିଲେ ଶ୍ୟାମାପଦବାବୁଙ୍କ ପିଲାବେଳର ପୂଜନୀୟା ଗୁରୁମା' । ମଣିଷ ଗଢୁଥିବା ଏହି ଅନନ୍ୟା କାରିଗରଙ୍କ ହାତ ବାଜି ନଥିଲେ ଶ୍ୟାମାପଦବାବୁ ହୁଏତ ଆଜି ଏତେ ବଡ଼ ପଦର ଅଧିକାରୀ ହୋଇପାରି ନ ଥା'ନ୍ତେ ।

ଚାଳିଶବର୍ଷ ପୂର୍ବର ଦୃଶ୍ୟସବୁ ଶ୍ୟାମାପଦବାବୁଙ୍କ ଆଖିଆଗରେ ଚଳଚ୍ଚିତ୍ର ଭଳି ଭାସିଆସିଲା । ବୟସ ସେତେବେଳେ ତାଙ୍କର ପ୍ରାୟ ଦଶବର୍ଷ ହେବ । କଲିକତାର ସେଣ୍ଟ୍‌ପଲ୍ ପବ୍ଲିକ୍ ସ୍କୁଲରେ ଚତୁର୍ଥ ଶ୍ରେଣୀରେ ପଢୁଥାନ୍ତି । ସେଦିନ ଜଳଖିଆ ଛୁଟିବେଳେ ତାଙ୍କ ଅନ୍ତରଙ୍ଗ ସାଙ୍ଗ ରାଖାଲ ଆସି ପହଞ୍ଚିଲା । ତାଙ୍କ ଜଳଖିଆ ବାକ୍ସରୁ ବିସ୍‌କୁଟ୍ ଖଣ୍ଡିଏ ଉଠାଇନେଇ ଖାଉ ଖାଉ କହିଲା, ''ଜାଣିଛୁ ଶ୍ୟାମ, ଆଜି ଖେଳଛୁଟି ପରେ ଆମ ଇଂଲିଶ କ୍ଲାସରେ ପ୍ରଥମ କରି ପଢ଼ାଇବେ ନୂଆ ଗୁରୁମା' ମିସ୍ ପଟ୍ଟନାୟକ । ପିଲାଙ୍କ ଇଂରାଜୀ ଜ୍ଞାନ ବଢ଼ାଇବା ପାଇଁ ତାଙ୍କୁ ଭୁବନେଶ୍ୱର ସ୍କୁଲରୁ ଏଠାକୁ ବଦଳି କରାଯାଇଛି ବୋଲି ବାପା କାଲି ପ୍ରିନିସପାଲ୍‌ଙ୍କ ପାଖରୁ ଶୁଣିଥିଲେ ।''

ଶ୍ୟାମାପଦ ଚତୁର୍ଥ ଶ୍ରେଣୀରେ ଥିବା ଦୁଷ୍ଟପିଲାଙ୍କ ମଧ୍ୟରୁ ଜଣେ । ଜଳଖିଆ ଖାଇସାରି ପାଣି ପିଇଲା । ତା'ପରେ କହିଲା, ''ମୋ ଦେଇ ଇଂରାଜୀ ହବନି । ମୋର ପଟ୍ଟନାୟକ ଗୁରୁମା'ଙ୍କ ଠାରେ କି କାମ ? ତୁ ତ ଭଲପିଲା, ତାଙ୍କ ପାଖରୁ ଇଂରାଜୀ ଶିଖ୍ ।'' ଏଇ ସମୟରେ ଘଣ୍ଟା ବାଜିଲା । ପିଲାମାନେ ହୋ ହୋ ହୋଇ ଯେ ଯାହାର ଶ୍ରେଣୀକକ୍ଷରେ ପଶିଲେ । ଶ୍ୟାମ ଓ ରାଖାଲ ମଧ୍ୟ କ୍ଲାସ ଭିତରକୁ ଗଲେ । ଶ୍ୟାମ ପଛରେ ବସେ, ରାଖାଲ ଆଗରେ । ମିସ୍ ସାବିତ୍ରୀ ପଟ୍ଟନାୟକ କ୍ଲାସ ଭିତରକୁ ଆସିଲେ । ପିନ୍ଧିଥାନ୍ତି ଧଳା ଶାଢ଼ୀ, ଧଳା ବ୍ଲାଉଜ୍ । ହାତରେ ପଟେ ପଟେ ଚୁଡ଼ି । ବେଶଭୂଷା ଅତି ସରଳ । ହସ ହସ ମୁହଁ । ଗୁରୁମା' ଯେତେବେଳେ ସମସ୍ତଙ୍କୁ ନମସ୍କାର ହୋଇ ଟେବୁଲ୍ ପାଖକୁ ଗଲେ, ପିଲାମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସହଜ ଇଂରାଜୀରେ କହିଲେ, ''ମୋ ଟିକିସାଙ୍ଗମାନେ, ଆଗ ଚିହ୍ନାପରିଚୟ ହେବା ପରେ କାଲିଠୁ ପାଠ ପଢ଼ିବା ।''

ସବୁପିଲା ଜଣ ଜଣ କରି ଠିଆ ହୋଇ ଗୁରୁମା'ଙ୍କୁ ସେମାନଙ୍କ ନାଆଁ, ବାପାଙ୍କ ନାଆଁ ଓ ଘର ଠିକଣା କହିଲେ । ଗୁରୁମା' କହିଲେ, ''ଜଣ ଜଣ କରି କୁହ, କାହିଁକି ଇଂରାଜୀ ତମକୁ କଷ୍ଟ ଲାଗୁଛି ?'' ଯେ ଯାହାର କଥା କହିଲେ । ଶ୍ୟାମାପଦର ପାଳି ପଡ଼ିବାରୁ ସେ କହିଲା, ''ଗୁରୁମା', ଇଂରାଜୀ ମୋତେ ମୋଟେ ଭଲଲାଗେନି । ଆଗ ଇଂଲିଶ ସାର୍ କହୁଥିଲେ, ଆଉ ବାପା ବି କହନ୍ତି, ମୁଁ ଇଂଲିଶରେ ପାରିବିନି ।'' ମିସ୍ ପଟ୍ଟନାୟକ କହିଲେ, ''ଶ୍ୟାମାପଦ, କାଲିଠାରୁ ଆଉ ପଛରେ ନ ବସି ଆଗ ବେଞ୍ଚରେ ବସିବ । ଦେଖିବ ଇଂରାଜୀ କେତେ ଭଲଲାଗୁଛି ।''

ପରଦିନଠାରୁ ଶ୍ୟାମାପଦ ଗୁରୁମା'ଙ୍କ ଶ୍ରେଣୀରେ ସାମନା ସିଟ୍‌ରେ ବସେ । ଧୀରେ ଧୀରେ ସେ ଅନୁଭବ କଲା, ମିସ୍ ପଟ୍ଟନାୟକଙ୍କ ଇଂରାଜୀ ପିରିଅଡ୍ ଅନ୍ୟ

ସମସ୍ତଙ୍କ ପିରିୟଡ୍ ଅପେକ୍ଷା ତାଙ୍କୁ ଭଲଲାଗୁଛି । ତା'ର ସୌଭାଗ୍ୟକୁ ପରବର୍ତ୍ତୀ ଆଉ କେତେବର୍ଷ ମିସ୍ ପଟ୍ଟନାୟକ ଶ୍ୟାମାପଦର ଇଂରାଜୀ ଶିକ୍ଷକ ହୋଇ ରହିଲେ ।

ମିସ୍ ପଟ୍ଟନାୟକ କେବେହେଲେ କୌଣସି ପିଲାଙ୍କୁ ବିରକ୍ତ ହୁଅନ୍ତି ନାହିଁ । ଏପରିକି କ୍ଲାସର ସବୁଠାରୁ ଦୁଷ୍ଟପିଲାଙ୍କୁ ମଧ୍ୟ ସେ ସ୍ନେହବୋଳା ସ୍ୱରରେ କଥା କହନ୍ତି । ଆଉ ଠିକ୍ ଓଲଟା ଥିଲେ ସ୍କୁଲର ପ୍ରିନ୍ସିପାଲ ଭଟ୍ଟାଚାର୍ଯ୍ୟବାବୁ । ହାତରେ ସବୁବେଳେ ବେତଧରି ବୁଲୁଥାନ୍ତି । ପିଲାମାନେ ତାଙ୍କୁ ଦେଖିଲେ ଭୟରେ ଥରନ୍ତି । ଦୁର୍ଭାଗ୍ୟକୁ ଦିନେ ଶ୍ୟାମାପଦକୁ ପ୍ରିନିସ୍‌ପାଲଙ୍କ ବେତମାଡ଼ ଅନୁଭବ କରିବାକୁ ପଡ଼ିଲା ।

ସେଦିନ ଶ୍ୟାମାପଦ ଓ ଆଉ କେତେଜଣ ଦୁଷ୍ଟପିଲା ସ୍କୁଲପାଖରେ ଥିବା ଜଣେ ଭଦ୍ରଲୋକଙ୍କ ବାଡ଼ିରେ ପଶି ପିଜୁଳି ତୋଳୁଛନ୍ତି, ଆକସ୍ମିକ ଭାବରେ ସେମାନେ ପ୍ରିନିସିପାଲଙ୍କ ହାବୁଡ଼ରେ ପଡ଼ିଲେ । ସମସ୍ତଙ୍କ ପିଠି ବେତମାଡ଼ରେ ଲାଲ ହୋଇଗଲା । ଶ୍ୟାମାପଦ ସେବର୍ଷ ପରୀକ୍ଷାରେ ଖୁବ୍ ଖରାପ କଲା । ପ୍ରୋଗ୍ରେସ୍ ରିପୋର୍ଟ ସ୍କୁଲ୍‌ରୁ ନେଇ ଆଉ ଘରେ ଦେଖାଇଲା ନାହିଁ । କାରଣ ସବୁ ବିଷୟରେ ନମ୍ବର କମ୍ ଥିଲା ।

ଏଥିରୁ ରକ୍ଷା ପାଇବା ପାଇଁ ସେ ପ୍ରତିଦିନ ଖାଇସାରି ସ୍କୁଲକୁ ବାହାରିଲେ ମଧ୍ୟ ସ୍କୁଲ ନ ଯାଇ ସହରର ସିନେମା ହଲଗୁଡ଼ିକ ପାଖରେ ବୁଲାବୁଲି କରି ଘରକୁ ଫେରେ । କେତେଦିନ ପରେ ସ୍କୁଲକୁ ଯେଉଁଦିନ ଗଲା, ଶ୍ରେଣୀଶିକ୍ଷକ 'ଏତେଦିନ ଧରି କାହିଁକି ଆସିଲୁ ନାହିଁ ?' ପଚାରିବାରୁ ତାଙ୍କୁ 'ଟାଏଫଏଡ୍‌ରେ ପଡ଼ିଥିଲି' ବୋଲି କହିଲା । ସାର୍‌ଙ୍କର ସନ୍ଦେହ ହେବାରୁ ସେ ଶ୍ୟାମାପଦର ବାପାଙ୍କୁ ଦେଖାକଲେ । ସବୁକଥା ଜଣାପଡ଼ିଗଲା । କଥା ପ୍ରିନିସିପାଲଙ୍କ କାନକୁ ଗଲା ।

ପ୍ରିନିସିପାଲ୍ ବେତଧରି ଶ୍ୟାମାପଦର ଶ୍ରେଣୀରେ ପଢ଼ାଉଥିଲେ । ସେତେବେଳେ ମିସ୍ ପଟ୍ଟନାୟକ ଇଂରାଜୀ ପଢ଼ାଉଥାନ୍ତି । ତାଙ୍କୁ ବନ୍ଦ କରିବାକୁ କହି ପ୍ରିନିସିପାଲ୍ ଶ୍ୟାମାପଦକୁ ଡାକିଲେ । ତା'ପରେ ହାତରେ ବେତମାଡ଼ । ସହି ନ ପାରି ଶ୍ୟାମ ଚିତ୍କାର କରୁଥାଏ । ମିସ୍ ପଟ୍ଟନାୟକ ବେଶୀ ସମୟ ଏ ଦୃଶ୍ୟ ଦେଖିପାରିଲେ ନାହିଁ– ଦଉଡ଼ିଯାଇ ପ୍ରିନିସିପାଲଙ୍କୁ ଠେଲିଦେଇ ଶ୍ୟାମକୁ ବଞ୍ଚାଇଲେ । ବୋଧହୁଏ ଆଉ କାହାରି ଏତେ ସାହସ ହୋଇ ନ ଥା'ନ୍ତା । ସେ ତାଙ୍କର ରୁମାଲ କାଢ଼ି ଶ୍ୟାମର ରକ୍ତ ବୋହୁଥିବା ପାପୁଲିରେ ଗୁଡ଼ାଇଦେଇ ଛଳ ଛଳ ଆଖିରେ କହିଲେ, ''କାହିଁକି ଏତେ ଦୁଷ୍ଟ ହେଉଛୁ ଶ୍ୟାମ ?''

ଶ୍ୟାମାପଦକୁ ପ୍ରିନିସିପାଲଙ୍କ ବେତମାଡ଼ ଯେତେ କଷ୍ଟ ଦେଇ ନ ଥିଲା, ତା'ର ପ୍ରିୟ ଗୁରୁମା'ଙ୍କ ଦୁଃଖପୂର୍ଣ୍ଣ କଥା ଅଧିକ କଷ୍ଟଦେଲା । ସେ ମନେ ମନେ ପ୍ରତିଜ୍ଞା କଲା– ସେ ଭଲପିଲା ହେବ, ଭଲ ପାଠ ପଢ଼ିବ । ତା'ପରଠୁ ସେ ଦାୟିତ୍ୱବାନ୍ ହେବାକୁ ଯତ୍ନକଲା । ପରୀକ୍ଷାରେ ବି ସେ ଭଲ କଲା । ଯଦିଓ କ୍ଲାସ୍‌ରେ ସେ ପୋଜିସନ୍ ରଖିପାରିଲା ନାହିଁ, ସବୁ ବିଷୟରେ ଭଲକଲା ଏବଂ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କଲା ।

ସମୟ ଗଡ଼ିଚାଲିଲା । ଶ୍ୟାମାପଦ କଲେଜରୁ ମଧ୍ୟ କୃତିତ୍ୱ ସହକାରେ ପାସ୍‌କଲା; କିନ୍ତୁ ସେ ତାର ପୂଜନୀୟା ଶିକ୍ଷକ ମିସ୍ ପଟ୍ଟନାୟକଙ୍କୁ ଭୁଲି ନ ଥାଏ । ସେ ଖବର ପାଇଲା, ମିସ୍ ପଟ୍ଟନାୟକ ବିବାହ କରିସାରି କଲିକତା ଛାଡ଼ି ଚାଲିଯାଇଛନ୍ତି । ୧୯୭୭ରେ ଶ୍ୟାମାପଦ ସର୍ବଭାରତୀୟ ଆଇ.ପି.ଏସ୍. ପରୀକ୍ଷାରେ କୃତକାର୍ଯ୍ୟ ହେଲା । ଏକଥା ଗୁରୁମା'ଙ୍କୁ ଜଣାଇବା ପାଇଁ ତାର ଖୁବ୍ ଇଚ୍ଛାହେଲା, କିନ୍ତୁ ତାଙ୍କ ଠିକଣା ତାଙ୍କୁ ଜଣା ନ ଥିଲା ।

ଆଠବର୍ଷ ପରେ ଶ୍ୟାମପଦବାବୁ ବଦଳି ହୋଇ ଭୁବନେଶ୍ୱରକୁ ଆସିଲେ । ତାଙ୍କର ସୌଭାଗ୍ୟକୁ ଗୁରୁମା'

ସାବିତ୍ରୀ ପଟ୍ଟନାୟକ ସେତେବେଳେ କଟକରେ ଥାଆନ୍ତି । ଖବର ପାଇ ଶ୍ୟାମାପଦବାବୁ ତାଙ୍କୁ ଦେଖାକଲେ । ସେ ଆଶ୍ଚର୍ଯ୍ୟ ହେଲେ ଯେ ଗୁରୁମା'ଙ୍କ ସ୍ୱଭାବ ଆଗଭଳି ନମ୍ର ଥିଲା, ସେ ସେମିତି ସରଳ ଓ ଶାନ୍ତ ଥିଲେ । ଯା'ପରେ ଶ୍ୟାମାପଦବାବୁ ବଦଳି ହୋଇ ହାଇଦ୍ରାବାଦ ଚାଲିଗଲେ । ହଠାତ୍ ଦିନେ ସେ ଖବର ପାଇଲେ ତାଙ୍କର ପୂଜନୀୟା ଶିକ୍ଷୟିତ୍ରୀ କ୍ୟାନସର ପୀଡ଼ିତ ହୋଇ ସ୍ୱାମୀଙ୍କ ସହିତ ହାଇଦ୍ରାବାଦକୁ ଚିକିତ୍ସାପାଇଁ ଆସିଛନ୍ତି । ଜୀବନରେ ପ୍ରଥମଥର ପାଇଁ ଶ୍ୟାମାପଦଙ୍କ ଆଖିରୁ ଲୁହ ଝରିଲା । ସେ ଅନୁଭବ କଲେ, ଗୁରୁମା' ତାଙ୍କର କେତେ ନିଜର । ଚିକିତ୍ସାପରେ ସୁସ୍ଥ ହୋଇ ସେ ତାଙ୍କ ଘର ଭୁବନେଶ୍ୱରକୁ ଫେରିଆସିଲେ ।

ଶ୍ୟାମାପଦବାବୁ ଇତିମଧ୍ୟରେ ପ୍ରମୋସନ ପାଇ ଭୁବନେଶ୍ୱର ଗଲେ । ଗୁରୁମା'ଙ୍କ ସହ ତାଙ୍କର ନିୟମିତ ସମ୍ପର୍କ ରହିବ ବୋଲି ଭାବି ସେ ଖୁସିହେଲେ; କିନ୍ତୁ ଗୁରୁମା'ଙ୍କ ସହ ଭୁବନେଶ୍ୱରରେ ସେ ଯେତେବେଳେ ଦେଖାକଲେ, ସେ ଅନୁଭବ କଲେ ତାଙ୍କର ଯେପରି ଆଉ ସଂସାର ପ୍ରତି ଆକର୍ଷଣ ନାହିଁ । ଆଉ ସତକୁ ସତ ଆଜି ସକାଳେ ଗୁରୁମା'ଙ୍କର ସ୍ୱାମୀଙ୍କ ଠାରୁ ଖବର ମିଳିଲା– ତାଙ୍କର ଗତ ରାତିରେ ପରଲୋକ ହୋଇଯାଇଛି ।

ଶ୍ୟାମାପଦବାବୁଙ୍କର ଚମକ ଭାଙ୍ଗିଲା । ତାଙ୍କ ସହିତ ଭୁବନେଶ୍ୱରରୁ ପୁରୀ ଆସିଥିବା କ୍ୟାପିଟାଲ ଥାନାର ଇନିସ୍‌ପେକ୍ଟର ରାଜୀବବାବୁ ତାଙ୍କୁ କହୁଥାନ୍ତି, ''ସାର୍, ଆପଣ ପରା କହୁଥିଲେ ଚିତା ଶୀତଳ ହେବାପରେ ସ୍ନାନସାରି ଭୁବନେଶ୍ୱର ଫେରିବେ । ଅନ୍ୟମାନେ ସ୍ନାନପାଇଁ ଆଗେଇଲେଣି ।'' ଶ୍ୟାମାପଦ ଲିଭିଆସୁଥିବା ଚିତାକୁ ଭୂମିଷ୍ଠ ପ୍ରଣାମ କରି ରାଜୀବଙ୍କୁ କହିଲେ, ''ଚାଲ ।'' (ସତ୍ୟଘଟଣା ସମ୍ବଳିତ ଏକ ଇଂରାଜୀ ଲେଖାର ଛାୟାରେ ଲିଖିତ)

*ବୈରାମ ନଗର ଛକ, ବାଲେଶ୍ୱର-୩*



# ଜିତିବାରେ ଆମେ ଦିନେ

ଶ୍ରୀ ସୁମନ୍ତ ମହାରଣା

ଖରା ଆସେ ମାଡ଼ି        ତାତି ଯାଏ ବଢ଼ି
ପାଚିଲାରେ ଆମ୍ବ ଗଛେ,
ତାଳ ବି ଫଳିଛି        ଖଜୁରି ପାଚିଛି
ପିଲାଙ୍କର ମନ ନାଚେ ।
ପରୀକ୍ଷା ସରିଛି        ନୂଆ ଶ୍ରେଣୀରେ ତ
ନୂଆ ଖାତା ବହି କେତେ
ଗ୍ରୀଷ୍ମଛୁଟି ହେଲା        ଗାଁ'ରେ ମେଳଣ
ବିଦ୍ୟାଳୟ ଛୁଟି ମାସେ ।
ଏଇ ବର୍ଷ ଛୁଟି        ଖେଳରେ ନ ମାଡ଼ି
କରିବାକୁ ଭଲ କାମ
ଗାଁ ପିଲା ମିଶି        ସଭାଟେ ଡାକିଲେ
'ସ୍ୱଚ୍ଛତା' ଦେଲେ ତା ନାମ ।
ଗାଁ ରାସ୍ତାଘାଟ        ଗଡ଼ିଆ ପୋଖରୀ
ହୋଇବ ଯେ ନିରିମଳ
'ଯେଉଁଠି ନିର୍ମଳ        ସେଇଠି ଠାକୁର'
ପିଲାଏ ଦେଲେ ସ୍ଲୋଗାନ ।
ଏଇକଥା ଶୁଣି        ଗାଁ ସରପଞ୍ଚ
କହିଲେ ଭୋଜିଟେ ଦେବେ
ଭଲକାମ କଲେ        ଦେଶ ଦୁନିଆଁକୁ
ଜିତିବାରେ ଦିନେ ଆମେ ।

*ପାଟପୁର, ନିମାପଡ଼ା, ପୁରୀ*

# ଭୁଲ ବୁଝିଲା

ଶୋଭନା ଜେନା

ଅତି ସରାଗରେ ଫୁଲଟିଏ ଫୁଟି
ହସୁଥିଲା ବଗିଚାରେ
କେଉଁଠୁ ଆସିଲା ଚଗଲା ରାଜୁଆ
ଟାଣିଦେଲା ଆଙ୍କୁଡ଼ିରେ ।

ପଡ଼ିଗଲା ତଳେ ବହିଲା ଫୁଲର
ଆଖିରୁ ଲୁହର ଧାର
ରାଜୁଆକୁ ଡାକି କହିଲା ବିନୟେ
'କି ଦୋଷ କରିଲି ତୋର ?



ମନ ଖୁସି ପାଇଁ ଛିଣ୍ଡାଇଲ ମୋତେ
ମୋ ଦୁଃଖ ବୁଝିଲ ନାହିଁ
ଗଛରୁ ଅଲଗା କରିଦେଇ ଜାଣ
ଭୁଲ କଲ କେତେ କାହିଁ ।

ଆମେ ଯେତେ ଫୁଲ ସୃଷ୍ଟି ଏ ଜଗତେ
ମହକରେ ଦେଉ ଭରି
ଜିଣିଥାଉ କେତେ କୋଟି ଜନମନ
ସୌନ୍ଦର୍ଯ୍ୟ ପସରା ଧରି ।

ଜନମ ଆମର ତୁମରି ସେବାରେ
ମନେ ଦେଉଥାଉ ଖୁସି
ଯେତେ ବାଧା ଆସୁ ଆମରି ଜୀବନେ
ସହିନେଉ ହସି ହସି ।

ତୁମପରି ଗଢ଼ା ଆମରି ଜୀବନ
ରକତ ରହିଛି ଦେହେ
ଟାଣିଆଣ ଯେବେ ଭାରି କଷ୍ଟ ହୁଏ
କହେନାହିଁ ସବୁ ସହେ ।'

ରାଜୁଆ ଦେଖିଲା ସତରେ ଗଛରୁ
ବହେ ଧାର ଧାର ଖିର
ଲାଗିଲା ଯେମିତି ଦେହରୁ ତାହାର
ବହୁଅଛି ଲହୁ ଧାର ।

କାନ୍ଦ କାନ୍ଦ ହୋଇ ଫୁଲକୁ ଆଉଁଶି
କହିଲା ତା କାନେ ଯାଇ
'ଆଜିଠୁ ଶପଥ ନେଉଛି ତୋ ପାଶେ
ଫୁଲ ଛିଣ୍ଡାଇବି ନାହିଁ ।'

ପ୍ରତିଦିନ ନାନା ଗଛ ଲଗାଇଲା
ଆଦର ଯତନ କରି
ବଡ଼ ହୋଇ ଗଛ ହସି ଉଠୁଥିଲେ
ଫୁଲଫଳ କୋଳେ ଧରି ।

ଆନନ୍ଦ ମନରେ ନାଚି ନାଚି ରାଜୁ
ଗେହ୍ଲା କରେ ପାଶେ ଯାଇ
କେତେ ବଡ଼ ଭୁଲ କରିଥିଲା ସିଏ
ବୁଝିଗଲା ନିଜେ ସେହି ।

*ମଛାକୋ, ସାଇଁକୁଳ, କେନ୍ଦୁଝର-୭୫୮୦୪୩*

# ଜିଦ୍‌ଖୋରୀ ରାଜକୁମାରୀ

ଶ୍ରୀ ଗନ୍ଧର୍ବସେନ ରଣା

ରାଜାରାଜୁଡ଼ା ଅମଳର କଥାଟିଏ । ଚମ୍ପକପୁର ରାଜା ସୁଖେଣ ଓ ରାଣୀ ସଂଯୁକ୍ତା । ତାଙ୍କର ଏକମାତ୍ର କନ୍ୟା ସୁକନ୍ୟାକୁ ନେଇ ଗର୍ବ । କାରଣ ସୁକନ୍ୟା ଅତୀବ ସୁନ୍ଦରୀ । ତା'ର ମୁହଁକୁ ଯିଏ ଦେଖୁ ନା କାହିଁକି କ୍ଷଣିକ ପାଇଁ ଅଚେତ ହୋଇଯାଏ । ନିଜର ସୁନ୍ଦରତାକୁ ନେଇ ସୁକନ୍ୟା ଏତେ ଗର୍ବୀ ଯେ ସେ ସାଧାରଣ ଲୋକଙ୍କ ସମ୍ମୁଖକୁ ଆସେନାହିଁ କି ସେମାନଙ୍କ ସହ କଥା ହୁଏନାହିଁ ।

ସୁକନ୍ୟା ଶିକାରପ୍ରିୟ । ସେ ତା'ର କଳା ଘୋଡ଼ାରେ ବସି ଜଙ୍ଗଲକୁ ଚାଲିଯାଏ । ଗୋଟାଏ ହାତରେ ଘୋଡ଼ାର ଲଗାମ, ଅନ୍ୟ ହାତରେ ଧନୁ । ପିଠି ପଟରେ ତୀରଭରା ତୂଣୀର । ପଛେ ପଛେ କିଛି ରାଜସେବିକା । ସେଇ ଜଙ୍ଗଲରେ ସୁନେଲି ରଙ୍ଗର ହରିଣ ଅନେକ । ଦିନେ ସୁକନ୍ୟା ପ୍ରଲୋଭିତ ହୋଇଉଠିଲା ଗୋଟିଏ ହରିଣ ପ୍ରତି । ତାକୁ ଶିକାର କରିବା ପାଇଁ ଘୋଡ଼ାକୁ ଦଉଡ଼ାଇଲା । ଘୋଡ଼ା ଦଉଡ଼ି ଦଉଡ଼ି ପାଖରୁ ଦୂରକୁ ଚାଲିଗଲା ଅନ୍ୟ ଏକ ରାଜ୍ୟର ଜଙ୍ଗଲକୁ ।



ସହଚରୀମାନେ ଯେତେ ମନାକଲେ ବି ସୁକନ୍ୟା ଶୁଣିଲା ନାହିଁ ।

ହଠାତ୍ ସମ୍ମୁଖରେ ଯୁବକ ଜଣେ ଉଭାହୋଇଗଲେ । ସୁକନ୍ୟା ଘୋଡ଼ାକୁ ଅଟକାଇ ପଚାରିଲା- ମୋ ଆଗରେ ଠିଆ ହେବାର ସାହସ କିଏ ତୁମକୁ ଦେଲା ?

'ଏଇ ବେଲାପୁର ରାଜ୍ୟର ରାଜକୁମାର ବୀରବାହୁର ସାହସରେ ।'

'କିନ୍ତୁ ମୁଁ ଶିକାର କରିବି ହିଁ କରିବି ?' ସୁକନ୍ୟା କହିଲା ''ବାଳିକା ! ଯିଦ୍ ଭାବ କରନି । ଏବେ ତୁ ଏଇ ରାଜ୍ୟର ଜଣେ ସାଧାରଣ ପ୍ରଜା । ଆଉ ଜଙ୍ଗଲରେ ଶିକାର କରିବାର ଅଧିକାର ଅଛି କେବଳ ଏଇ ରାଜ୍ୟର ସ୍ଥାୟୀ ପ୍ରଜାମାନଙ୍କର ।'' ତେବେ ସୁକନ୍ୟା ଆଶ୍ଚର୍ଯ୍ୟରେ ପଡ଼ିଗଲା ଏଇଥିପାଇଁ ଯେ ତା'ର ସୌନ୍ଦର୍ଯ୍ୟକୁ ଦେଖି ବୀରବାହୁ କିପରି ଅଚେତ ହେଉନାହିଁ !

ସେଇଠି ବୀରବାହୁ ସୁକନ୍ୟାକୁ ନିରସ୍ତ୍ର କରାଇ ନିଜ ରଥରେ ବସାଇ ରାଜମହଲକୁ ନେଇଗଲା । ସୁକନ୍ୟା ଚଟାପଟ୍ ତା'ର ସଖୀମାନଙ୍କୁ ନିର୍ଦ୍ଦେଶ ଦେଲା– ଶୀଘ୍ର ରାଜ୍ୟକୁ ଫେରିଯାଇ ରାଜାଙ୍କୁ ଖବର ଜଣାଅ ।

ସୁକନ୍ୟାକୁ ରାଜମହଲରେ ପହଞ୍ଚାଇଥିବାରୁ ବୀରବାହୁ ବାପା ପଲ୍ଲବସେନ୍‌ଙ୍କୁ ସମସ୍ତ ବିଷୟ ଶୁଣାଇଲା । ସହସା ରାଜା ସୁକନ୍ୟାକୁ ଦେଖିବାମାତ୍ରେ ଅଚେତ ହୋଇଗଲେ । ତହିଁ ପରେ ପରେ ପାରିଷଦର ଯିଏ ତାର ମୁହଁକୁ ଚାହିଁଲା, ଅଚେତ ହୋଇଗଲା; ହେଲେ ବୀରବାହୁ କିଛି ବୁଝିପାରୁ ନ ଥାଏ- କାହିଁକି ଏପରି ଘଟୁଛି ।

ଅପରପଟରେ ରାଜା ସୁଖେଣ ସମସ୍ତ ବିଷୟ ଶୁଣିବାମାତ୍ରେ ବିଚଳିତ ହୋଇ ପଡ଼ୋଶୀ ରାଜ୍ୟ ବେଲାପୁର ଉପରେ ଆକ୍ରମଣ କରିବାର ସିଦ୍ଧାନ୍ତ ନେଇଗଲେ ।

ଏକ ବିଶାଳ ସୈନ୍ୟସାମନ୍ତ ଦେଖି ରାଜା ପଲ୍ଲବସେନ ସେନାପତିଙ୍କଠାରୁ ଜାଣିବାକୁ ପାଇଲେ– ଚମ୍ପକପୁର ରାଜା ତାଙ୍କ ଝିଅକୁ ଛଡ଼ାଇବା ପାଇଁ ସୈନ୍ୟସାମନ୍ତ ଧରି ଆସିଛନ୍ତି । ତେବେ ପରମମିତ୍ର ସୁଖେଣ ଏପରି କାହିଁକି ଉଦ୍ୟମ କଲେ ଜାଣିବାପାଇଁ ତାଙ୍କୁ ନିମନ୍ତ୍ରଣ ଜଣାଇଲେ ପ୍ରଥମେ ଆପୋଷ ଆଲୋଚନା କରିବାକୁ ।

ପରଦିନ ସକାଳେ ଯୁଦ୍ଧଭୂମିରେ ଦୁଇମିତ୍ର ଏକାଠି ହେବାରେ ସୁଖେଣ ପ୍ରଥମେ ଆରମ୍ଭ କଲେ– ତୁମ ପୁତ୍ର ବୀରବାହୁ ମୋ ଝିଅକୁ ଅପହରଣ କରିଛି; କିନ୍ତୁ ତାକୁ ଦେଖିବାପରେ ବି ଅଚେତ ହୋଇନାହିଁ କିପରି ?

''ହଁ, ଠିକ୍‌କଥା । ସୁକନ୍ୟାକୁ ଦେଖୁ ଦେଖୁ ମୁଁ ତଥା ମୋର ଦରବାରୀଗଣ ମଧ୍ୟ ଅଚେତ ହୋଇଯାଇଛନ୍ତି କିଛି ସମୟ ପାଇଁ । ହଁ, ମିତ୍ର ମୋ ଇଚ୍ଛା ହେଉଛି ଖୋଲିକରି କହିବା ପାଇଁ । ତୁମର ଓ ମୋର ମିତ୍ରତା ନେଇ ବୀରବାହୁ କିଛି ଜାଣିନାହିଁ । ଆମର ସମ୍ପର୍କ ଆହୁରି ମଧୁମୟ ହେଉ ବୋଲି ମୋ ଇଚ୍ଛା ।'' ରାଜା ପଲ୍ଲବ ସେନ୍ କହିଲେ ।



''ମଧୁମୟ କିପରି ?'' ସୁଖେଣ ଉତ୍କଣ୍ଠାର ସହ ପଚାରିଲେ ।

ଦେଖ ସୁକନ୍ୟାକୁ ଯେଉଁଠି ବିବାହ ଦେବ, ସେ ପିଲାଟା ନିଶ୍ଚୟ ଦେଖୁ ଦେଖୁ ଅଚେତ ହୋଇପଡ଼ିବ । ଆଉ ସଂସାର କିପରି ଚଳାଇବେ ? ଯଦି ବୀରବାହୁ ସହ ତା'ର ବିବାହ କରିଦିଆଯାଏ, ମଙ୍ଗଳ ତଥା ମଧୁମୟ ହେବ ।'' ବାହାର ରୂପ, ଶରୀର ଓ ସୌନ୍ଦର୍ଯ୍ୟର ପ୍ରଭାବ ମୋର ପୁତ୍ର ଉପରେ ଆଦୌ ପଡ଼େନାହିଁ । ଏହା ତା' ପ୍ରତି ଈଶ୍ୱରଙ୍କର ଆଶୀର୍ବାଦ । ପଲ୍ଲବସେନ ଆନନ୍ଦରେ ଜଣାଇଲେ ।

ବୀରବାହୁ ସହ ସମ୍ପର୍କ କଥା ଶୁଣୁଶୁଣୁ ରାଜା ସୁଖେଣ ରାଜା ପଲ୍ଲବସେନକୁ କୋଳାଇନେଲେ । ଆଉ ମଧ୍ୟ ସେଇଠି ସର୍ତ୍ତ ରଖାଗଲା– ବିବାହ ବେଦିରେ ସୁକନ୍ୟା ତା'ର ମୁଖମଣ୍ଡଳକୁ ଘୋଡ଼ାଇ ରଖିବ, ନହେଲେ ମନ୍ତ୍ର ଉଚ୍ଚାରଣ କରୁଥିବା ପଣ୍ଡିତେ ଅଚେତ୍ ହୋଇପଡ଼ିବେ । ବିବାହ କାର୍ଯ୍ୟ ସମାପନ ହୋଇପାରିବ ନାହିଁ ।

ସେଇ କଥାନୁସାରେ ବିବାହ କାର୍ଯ୍ୟ ସମାପନ ହେଲା । ସମସ୍ତ ବିଧିବିଧାନକୁ ପାଳନ କରାଗଲା । ସୁକନ୍ୟାର ଜିଦ୍‌ଖୋର୍ ଭାବ ଧୀରେ ଧୀରେ ମଉଳିଗଲା ।

*ଏମ୍.ଏ.୫୩, ଜିଜିପି କଲୋନୀ, ରସୁଲଗଡ଼, ଭୁବନେଶ୍ୱର*

---

**ବିଜ୍ଞାନ କୁଇଜ୍‌ର ଉତ୍ତର-** ୧) ଜୋହନ୍‌ସନ୍, ୨) ଗ୍ରେଟ୍-ବ୍ରିଟେନ୍, ୩) ଡେନିସ୍ ପାପିନ୍, ୪) ୟୁରାନ୍‌ସ୍, ୫) ଭିଟାମିନ୍-ଏ, ୬) ଟାଇଟାନିଆ ୟୁରାନ୍‌ସ୍, ୭) ଫ୍ଲିଣ୍ଟ୍ କାଚ, ୮)୨୫୦୦ ଶ୍ଳୋକ, ୯) ଯକୃତ୍, ୧୦) Frequency Modulation.

# ଡୁରିଆନ୍ (Durian)

## ଶ୍ରୀ ପ୍ରତାପ କିଶୋର ମହାନ୍ତି

ଡୁରିଆନକୁ ଦକ୍ଷିଣପୂର୍ବ ଏସିଆରେ 'ଫଳ ମାନଙ୍କ ମଧ୍ୟରେ ରାଜା' ବୋଲି କୁହାଯାଏ । ଏହି ଫଳ ଦୁଦୁରା ଫଳ ଭଳି; ମାତ୍ର ତା'ଠାରୁ ଆକାରରେ ଢେର୍ ବଡ଼ ଓ କଣ୍ଟକଯୁକ୍ତ । ଡୁରିଆନ୍ ବୃକ୍ଷମାନ ଇଣ୍ଡୋନେସିଆ (ବୋର୍ଣ୍ଣିଓ, ଜାଭା, ସୁମାତ୍ରା), ବ୍ରୁନେଇ, ଫିଲିପିନ୍ସ, ମାଲୟେସିଆ, ଭିଏତ୍‌ନାମ, ଥାଇଲ୍ୟାଣ୍ଡ, ଚୀନ ଇତ୍ୟାଦି ଦେଶରେ ଦେଖାଯାଆନ୍ତି । ଏହି ଗଛଗୁଡ଼ିକ ପର୍ତ୍ତୁଗୀଜମାନଙ୍କ ଦ୍ୱାରା ଶ୍ରୀଲଙ୍କାରେ ଓ ଦକ୍ଷିଣ ଭାରତରେ ମଧ୍ୟ ଲଗାଯାଇଅଛି ।

**ବୃକ୍ଷର ଶ୍ରେଣୀବିଭାଗ :-** ଡୁରିଆନ୍ ଫଳଧାରୀ ବୃକ୍ଷମାନ ମାଲ୍‌ଭାସି ବଂଶର ଡୁରିଓ ପ୍ରଜାତିର ଅନ୍ତର୍ଭୁକ୍ତ । କେତେକ ଉଦ୍ଭିଦ ବିଜ୍ଞାନର ଶ୍ରେଣୀବିଭାଗ ବିଶେଷଜ୍ଞଙ୍କ ମତରେ, ଏହା ବମ୍ବାକାସି ବଂଶର ଅନ୍ତର୍ଗତ । ଆନ୍ତର୍ଜାତିକ ସ୍ତରରେ ମିଳୁଥିବା ଡୁରିଆନ୍ ବୃକ୍ଷର ନାମ ଡୁରିଓ ଜିବେଥିନସ୍ । ଡୁରିଓ ପ୍ରଜାତିରେ ଥିବା ଜଣାଶୁଣା ତିରିଶଟି ଜାତି ମଧ୍ୟରୁ ନଅଟି ଜାତି ସୁପରିଚିତ । ଏହାର ଫଳ ଅନେକ ମାତ୍ରାରେ ପଣସ ଫଳ ଭଳି; ମାତ୍ର ଏହି ଫଳମାନଙ୍କ ତ୍ୱଚା ଉପରେ ଥିବା କଣ୍ଟାମାନ ବଡ଼ ବଡ଼ ଓ ସିଧାସିଧା ଥାଏ ଓ ଏହି ଫଳ ପଣସ ପ୍ରଜାତି ବା ବଂଶର ଅନ୍ତର୍ଭୁକ୍ତ ନୁହେଁ ।

**ବୃକ୍ଷ ଓ ଫଳର ବର୍ଣ୍ଣନା:-** ଡୁରିଆନ୍ ବୃକ୍ଷମାନ ବିରାଟ ଆକାରର ଓ ଜାତି ଉପରେ ନିର୍ଭର କରି ସେଗୁଡ଼ିକର ଉଚ୍ଚତା ୨୫-୫୦ ମିଟର ମଧ୍ୟରେ ହୋଇଥାଏ । ଏହାର ପତ୍ର ଚିରହରିତ୍ ଓ ଅଣ୍ଡାକୃତି କିମ୍ବା



ଆୟତାକାର ଏବଂ ୧୦-୧୮ ସେଣ୍ଟିମିଟର ଲମ୍ବ । ପୁଷ୍ପମାନେ ବଡ଼ ଶାଖା ମାନଙ୍କରେ ୩-୩୦ ଟିକିଆ ପୁଷ୍ପ ଗୁଚ୍ଛମାନଙ୍କରେ ପ୍ରସ୍ଫୁଟିତ ହୁଅନ୍ତି । ପୁଷ୍ପଗୁଡ଼ିକର ରଙ୍ଗ ଜାତି ଉପରେ ନିର୍ଭର କରି ହଳଦୀ, ଧଳା ବା ଲାଲ ରଙ୍ଗର ହୋଇଥାଏ । ପୁଷ୍ପଗୁଡ଼ିକ ସିଧା ବୃକ୍ଷର ବଡ଼ ବଡ଼ ଶାଖାମାନଙ୍କରେ ଫୁଟିଥାଏ ଓ ପ୍ରତ୍ୟେକ ଫୁଲରେ ପାଞ୍ଚଟି ବୃତି ଓ ପାଂଚଟି ପାଖୁଡ଼ା ଥାଏ । ଡୁରିଆନ୍ ବୃକ୍ଷ ଲଗାଯିବାର ୪-୫ ବର୍ଷ ପରେ ଏହା ପୁଷ୍ପ ଓ ଫଳ ଧାରଣ କରିବାକୁ କ୍ଷମ ହୁଏ । ପୁଷ୍ପଗୁଡ଼ିକ ବଡ଼ ବଡ଼ ଓ ମକରନ୍ଦପୂର୍ଣ୍ଣ ଓ ଏଥିରୁ ବାସି ଲହୁଣିର ବାସନା ବାହାରେ । ତେଣୁ ସେଗୁଡ଼ିକରେ ବାଦୁଡ଼ି, ମଧୁ ସଂଗ୍ରହକାରୀ ଭ୍ରମଣ ଓ ପକ୍ଷୀମାନଙ୍କ ଦ୍ୱାରା ପରପରାଗ ସଙ୍ଗମ ସଂଘଟିତ ହୁଏ । ଜାତି ଓ ପ୍ରକାର ଭେଦ ଅନୁସାରେ ଏହା ବର୍ଷକୁ ଥରେ ବା ଦୁଇଥର ପୁଷ୍ପ ଓ ଫଳ ଧାରଣ କରିଥାଏ । ଏହା ଏକ ଋତୁକାଳୀନ ଫଳ ହୋଇଥିବାରୁ ମାଲୟେସିଆ, ଇଣ୍ଡୋନେସିଆ ଓ ସିଙ୍ଗାପୁରରେ ଏହା ଜୁନ୍‌ରୁ ଅଗଷ୍ଟ ମାସ ମଧ୍ୟରେ ମିଳେ । ଡୁରିଆନ୍ ଫଳ ବୃକ୍ଷର ଶାଖାମାନଙ୍କରେ ଝୁଲୁଥାଏ ଓ ପୁଷ୍ପର ପରାଗ ସଙ୍ଗମର ପ୍ରାୟ ୩ ମାସ ମଧ୍ୟରେ ଡୁରିଆନ୍ ଫଳଟି ପାକଳ ଫଳରେ

ପରିଣତ ହୁଏ । ଫଳଟି ଲମ୍ବରେ ପ୍ରାୟ ୩୦ ସେଣ୍ଟିମିଟର ଏବଂ ଏହାର ବ୍ୟାସ ୧୫ ସେଣ୍ଟିମିଟର ପର୍ଯ୍ୟନ୍ତ ହୁଏ । ଫଳଟିର ଓଜନ ୧-୩ କିଲୋଗ୍ରାମ ପର୍ଯ୍ୟନ୍ତ ହୁଏ । ରଙ୍ଗ କଞ୍ଚାଥିବା ବେଳେ ସବୁଜ; ମାତ୍ର ପାକଳ ହେଲେ ବାଦାମି ଦେଖାଯାଏ । ଏହାର ମାଂସଳ ଅଂଶ ଜାତି ଉପରେ ନିର୍ଭର କରି ଈଷତ୍ ହଳଦିରୁ ଲାଲ ଦେଖାଯାଏ ।



ଫଳ ପାକଳ ହେଲେ ଏଥିରୁ ଏକ ପଚାପିଆଜ, ଟାର୍‌ପିନ୍ ଗନ୍ଧ ମିଶା ତୀବ୍ର ମାଦକ ଗନ୍ଧ ବାହାରେ । ପ୍ରତି ଫଳ ମଧ୍ୟରେ ଥିବା ପାଂଚଟି ଖୋସାର ଧଳା ବା ଈଷତ୍ ହଳଦି ସିଲ୍କ ଭଳି ଓ ଏହା ସର ପରି ଏକ ବହଳିଆ ରସଦ୍ୱାରା ପୂର୍ଣ୍ଣ । ଏହାହିଁ ଏହି ଫଳର ଖାଦ୍ୟ ଉପଯୋଗୀ ଅଂଶ । ପ୍ରତି ଖୋସାରେ ପ୍ରାୟ ତିନିଟି ମଞ୍ଜି ଥାଏ । ଏହାର ସ୍ୱାଦ ବହଳିଆ କଷ୍ଟାର୍ଡ ପରି ଓ ସେରି ମଦ ଭଳି । ଡୁରିଆନ୍ ଫଳର ତୀବ୍ର ବାସ୍ନାରେ ଆକର୍ଷିତ ହୋଇ ବିଭିନ୍ନ ପ୍ରକାର ପ୍ରାଣୀ ଯଥା- ପକ୍ଷୀ, ଗୁଣ୍ଡୁଚି ମୂଷା, ମୂଷାଭଳି ହରିଣ, ଘୁଷୁରି, ଭାଲୁ, ଓରାଂଉଟାନ୍, ହାତୀ, ମନୁଷ୍ୟ – ଏମିତିକି ସୁମାତ୍ରାରେ ବାଘମାନେ ଏହାକୁ ଭକ୍ଷଣ କରି ଏହାର ବୀଜ ବିସ୍ତାରରେ ସାହାଯ୍ୟ କରନ୍ତି । ଏହି ଫଳର ତୀବ୍ର ମାଦକ ବାସ୍ନା ଏଥିରେ ଥିବା ଇଷ୍ଟର, କିଟୋନ ଓ ଗନ୍ଧକର ଯୌଗିକମାନଙ୍କ ଯୋଗୁଁ ଉତ୍ପନ୍ନ ହୋଇଥାଏ ।

**କୃଷି ଓ ରପ୍ତାନୀ:-** ଡୁରିଆନ୍ ଦକ୍ଷିଣପୂର୍ବ ଏସିଆର ବିଷୁବମଣ୍ଡଳ ଅଞ୍ଚଳରେ ଚାଷ କରାଯାଏ । ଏହା ଦୈନିକ ତାପମାତ୍ରା ୨୨ ଡିଗ୍ରୀ ସେଣ୍ଟିଗ୍ରେଡ୍ (୭୨ ଡିଗ୍ରୀ ଫାରେନ୍‌ହିଟ୍)ରୁ କମ ହେଲେ ବଢ଼େନାହିଁ । ବୋର୍ଣ୍ଣିଓରେ ଖାଦ୍ୟ ଉପଯୋଗୀ ଡୁରିଆନ୍ ଫଳମାନ ସ୍ଥାନୀୟ ବଜାର ମାନଙ୍କରେ ବିକ୍ରି କରାଯାଏ । ସେଗୁଡ଼ିକ ହେଲା- ଡୁରିଓ କିବେଥିନସ୍, ଡୁରିଓ ଡଲସିତ୍, ଡୁରିଓ ଗ୍ରାଭିଓଲେନ୍‌ସ, ଡୁରିଓ କୁଟ୍‌ଜେନେସିସ୍, ଡୁରିଓ ଅକ୍ସଲେୟାନସ୍ ଏବଂ ଡୁରିଓ ଟେଷ୍ଟୁଡିନାରିୟସ ।

ଥାଇଲାଣ୍ଡ ପୃଥିବୀର ଡୁରିଆନ୍ ରପ୍ତାନୀକାରୀ ଦେଶମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରେ । ଏହା ପରକୁ ଅଛି ମାଲୟେସିଆ ଓ ଇଣ୍ଡୋନେସିଆ । ଥାଇଲ୍ୟାଣ୍ଡର ବାର୍ଷିକ ଡୁରିଆନ୍ ଅମଳ ହେଲା ୭୦୦, ୦୦୦ ଟନ୍, ଯେଉଁଥିରୁ ଏହା ୪୦୦, ୦୦୦ ଟନ୍ ରପ୍ତାନୀ କରେ । ଇଣ୍ଡୋନେସିଆ ଓ ମାଲୟେସିଆ ଦୁଇ ଦେଶ ପ୍ରାୟ ୨୬୫୦୦୦ ଟନ୍ ଡୁରିଆନ୍ ଅମଳ କରନ୍ତି । ୧୯୯୯ରେ ମାଲୟେସିଆ ୩୫୦୦୦ ଟନ୍ ଡୁରିଆନ୍ ରପ୍ତାନୀ କରିଥିଲା । ଚୀନ୍ ମୁଖ୍ୟ ଆମଦାନୀକାରୀ ଦେଶ, ତା' ପରକୁ ଅଛି ସିଙ୍ଗାପୁର । ଏହାକୁ ମଧ୍ୟ ୟୁରୋପ ଓ ଆମେରିକାର ଦେଶମାନେ ଆମଦାନୀ କରିଥାଆନ୍ତି ।

**ଖାଦ୍ୟରୂପେ ବ୍ୟବହାର:-** ବିଭିନ୍ନ ମିଷ୍ଟ ଖାଦ୍ୟକୁ ଆହୁରି ସ୍ୱାଦିଷ୍ଟ କରିବା ପାଇଁ ସେଥିରେ ଡୁରିଆନ୍ ଫଳରସ ମିଶାଯାଇଥାଏ । ମାଲୟେସିଆରେ ମାଳୟ, କାଣ୍ଡି, ଆଇସ୍ କାସାଙ୍ଗ, ଡୋଡଲ, ଲେମ୍ପକ୍, ରୋଜ୍ ବିସ୍କୁଟ୍, ଆଇସ୍‌କ୍ରିମ, ମିଲ୍କସେକ୍, ମୁନ୍ କେକ, ୟୁଲ୍ ଲଗ୍ସ, କାପୁସିନୋ ଇତ୍ୟାଦିରେ ଡୁରିଆନ୍ ଫଳରସ ବ୍ୟବହୃତ ହୋଇଥାଏ । ଡୁରିଆନ୍ ଆଇସ୍‌କ୍ରିମ୍ ଇଣ୍ଡୋନେସିଆ

ବଜାର ମାନଙ୍କରେ, ବିଶେଷତଃ ଜାଭାରେ ମିଳେ । ଭାତ, ନଡ଼ିଆରସ ଓ ଡୁରିଆନ୍ ରସ ମିଶି ରନ୍ଧାଯାଇଥିବା ପୁଲୁଗ୍ ଡୁରିଆନ୍ ଓ ଅନ୍ୟ କେତେକ ଡୁରିଆନ୍ ଖାଇବାକୁ ମିଳେ । ସାବାରେ ପିଆଜ, ଲଙ୍କା ସହ ଭଜାଯାଇଥିବା ଲଲ୍ ଡୁରିଆନ୍ ଫଳ ଖାଦ୍ୟ ସଙ୍ଗରେ ପରଷା ଯାଇଥାଏ । ଲାଲ ମାଂସଳ ଡୁରିଆନ୍ ରସ ଇଣ୍ଡୋନେସିଆରେ ମଧୁର ଜଳ ମାଛରୁ ପ୍ରସ୍ତୁତ ସାୟର୍ ସୁପ୍‌ରେ ମିଶାଯାଇଥାଏ । ଡୁରିଆନ୍ ଫଳର ମାଂସଳ ଖୋଷାମାନଙ୍କୁ ଶୁଖାଇ ଡୁରିଆନ୍ ଚିପ୍‌ସ (କ୍ରିପିକ୍ ଡୁରିଆନ୍) ପ୍ରସ୍ତୁତ କରାଯାଏ ।

ନିମ୍ନମାନର ଡୁରିଆନ୍ ଫଳରୁ 'ଟେମ୍ପୋୟାକ୍' ନାମକ ମଦ୍ୟ ପ୍ରସ୍ତୁତ କରାଯାଏ । ଟେମ୍ପୋୟାକ୍‌କୁ ସାଧାରଣତଃ ଭାତ ସହ ଖିଆଯାଏ । ଥାଇଲ୍ୟାଣ୍ଡରେ ତଟକା ପାଚିଲା ଡୁରିଆନ୍ ଫଳରସକୁ ମିଷ୍ଟଭାତ ସହ ଖିଆଯାଏ । ଡୁରିଆନ୍ ଗଛର କଅଁଳପତ୍ର ଓ ମୁକୁଳମାନ ମଧ୍ୟ ଶାଗକରି ଖିଆଯାଏ ।

କଞ୍ଚା ସବୁଜ ଡୁରିଆନ୍ ଫଳରେ ଶତକଡ଼ା ୬୫ଭାଗ ଜଳ, ୨୭ ଭାଗ ଶ୍ୱେତସାର, ୫ଭାଗ ସ୍ନେହସାର, ୧ଭାଗ ପ୍ରୋଟିନ୍ ଥାଏ । ଏଥିରେ ଭିଟାମିନ୍ ବି, ସି ଓ ସାମାନ୍ୟ ପରିମାଣରେ ମାଙ୍ଗାନିଜ୍ ଧାତୁ ମିଳେ ।

ମାଲୟେସିଆରେ ଡୁରିଆନ ବୃକ୍ଷର ଚେର ଓ ପତ୍ର ରସର ଅର୍କକୁ ଜ୍ୱର ପ୍ରତିରୋଧକାରୀ ଔଷଧ ରୂପେ ବ୍ୟବହାର କରାଯାଏ । ଏହି ଫଳ ଖାଇଲେ ଶରୀର ଗରମ ହୁଏ । ତେଣୁ ଏହାକୁ ମ୍ୟାଙ୍ଗୋଷ୍ଟିନ୍ ସହିତ ଖିଆଯାଏ, କାରଣ ମ୍ୟାଙ୍ଗୋଷ୍ଟିନ୍ ଶରୀରକୁ ଥଣ୍ଡା ରଖେ । ଉଚ୍ଚ ରକ୍ତଚାପ ରୋଗଗ୍ରସ୍ତ ବ୍ୟକ୍ତିମାନେ ଡୁରିଆନ ଫଳ ଖାଇବା ଉଚିତ ନୁହେଁ ।

*ଦେଉଳସାହି (ସାଇ ମନ୍ଦିର ସମ୍ମୁଖ),*
*ତୁଳସୀପୁର, କଟକ-୭୫୩୦୦୮*

ଆପଣଙ୍କର ନିରୀକ୍ଷଣ କରିବାର କ୍ଷମତା କେତେ, ତାହା ନିମ୍ନୋକ୍ତ ଚିତ୍ରରୁ ପରୀକ୍ଷା କରନ୍ତୁ । ଆଠ ସେକେଣ୍ଡ ମଧ୍ୟରେ ଏଥିମଧ୍ୟରୁ ଇଂରାଜୀ ସି ଅକ୍ଷର ବାହାର କରିପାରିଲେ ଆପଣଙ୍କର ନିରୀକ୍ଷଣ ଶକ୍ତି ଉତ୍ତମ ।

OOOOOOOOOOOOOOOOOOOOOOO
OOOOOOOOOOOOOOOOOOOOOOO
OOOOOOOOOOOOOOOOOOOOOOO
OOOOOOOOOOOOOOOOOOOOOOO
OOOOOOOOOOOOOOOOOOOOOOO
OOOOOOOOOOOOOOOOOCOOOOOO
OOOOOOOOOOOOOOOOOOOOOOO
OOOOOOOOOOOOOOOOOOOOOOO
OOOOOOOOOOOOOOOOOOOOOOO
OOOOOOOOOOOOOOOOOOOOOOO

ଉପର ଚିତ୍ରରେ କିଛି ଅସ୍ୱାଭାବିକତା ଲକ୍ଷ୍ୟ କରୁଛନ୍ତି ? ତାହା କ'ଣ ? *(ଉତ୍ତର ୪୫ ପୃଷ୍ଠାରେ)*

ଅଛି ନାହିଁର ଉତ୍ତର– ୧) ମୁଣ୍ଡରେ ଗୋଟେ ରିବନ ନାହିଁ, ୨) ଇଂଜିନ୍ ସାମ୍ନାରେ ଗୋଟେ ଗାର ନାହିଁ, ୩) ହାତରେ ଘଣ୍ଟା ନାହିଁ, ୪) ସୁଟ୍‌କେସ୍‌ର କ୍ଲିପ୍ ନାହିଁ, ୫) ହାତରେ ଥିବା ବ୍ୟାଗ୍‌ରେ କୋଲପ ଭିନ୍ନ ।

# ଖନା ବଚନ

ଶ୍ରୀ ଫକୀର ଚରଣ ପାଢ଼ୀ

ଦ୍ୱାଦଶ ଶତାବ୍ଦୀ (୧୧୧୪-୧୧୮୫ ଖ୍ରୀଷ୍ଟାବ୍ଦ)ରେ ସେତେବେଳେ ଦକ୍ଷିଣ-ବମ୍ବେ ଇଲାକାରେ ଅବସ୍ଥାନ କରୁଥିଲେ ଭାସ୍କରାଚାର୍ଯ୍ୟ ଦ୍ୱିତୀୟ । ସେ ଥିଲେ ସେ ସମୟର ଜଣେ ଜ୍ଞାନୀ, ଗୁଣୀ ଓ ବିଦ୍ୱାନ ବ୍ୟକ୍ତି । ଗଣିତ ବିଦ୍ୟାରେ ଥିଲା ତାଙ୍କର ଅଗାଧ ଜ୍ଞାନ । ଲେଖାଲେଖିରେ ହିଁ ସେ ପ୍ରଥମେ ଦଶମିକ ଧାରା ପ୍ରଚଳନ କରିଥିଲେ । ପୁଣି ଆଧୁନିକ ବୀଜଗଣିତରେ ଅଜଣା ସଂଖ୍ୟା ପାଇଁ ସେ ପ୍ରଥମେ ଅକ୍ଷର ବ୍ୟବହାର ଧାରାର ମଧ୍ୟ ସୂତ୍ରପାତ କରିଥିଲେ । ଦେଶାଚାର ପ୍ରଥାରେ ପ୍ରଚଳିତ 'ଯୁକ୍ତ ବିଯୁକ୍ତ' ଧାରାଟି ମଧ୍ୟ ତାଙ୍କଦ୍ୱାରା ନୂତନ ଭାବରେ ଆରମ୍ଭ କରାଯାଇଥିଲା ।

ଗଣିତ ବିଦ୍ୟାରେ ଏମିତି ସେ ବହୁ ନୂଆ ନୂଆ ପ୍ରୟୋଗ ଓ ପରୀକ୍ଷା କରି ସଫଳ ହେଇଥିଲେ । ଠିକ୍ ସେମିତି ଜ୍ୟୋତିଷ ବିଦ୍ୟାରେ ମଧ୍ୟ ସେ ଥିଲେ ଅଭିଜ୍ଞ, ନିପୁଣ ଓ ବିଚକ୍ଷଣ । ଗଣନା ଦ୍ୱାରା ସେ ଆଗତ ଭବିଷ୍ୟତର ବହୁ କଥା ଠିକ୍ ଠିକ୍ ଜାଣିପାରୁ ଥିଲେ । ତଦନୁଯାୟୀ ସେ ନିଜ କାର୍ଯ୍ୟର ରୂପାୟନ ମଧ୍ୟ କରୁଥିଲେ । ତାଙ୍କର ଶ୍ରେଷ୍ଠକୃତି ହେଉଛି 'ସିଦ୍ଧାନ୍ତ ଶିରୋମଣି' । ସେଥିରେ ସାମିଲ ହେଇଛି ଦୁଇଖଣ୍ଡ ଗଣିତ ଗ୍ରନ୍ଥ ଓ ଦୁଇଖଣ୍ଡ ଜ୍ୟୋତିଷ ଗ୍ରନ୍ଥ ।

ତାଙ୍କର ଏକମାତ୍ର କନ୍ୟା ଥିଲେ ଲୀଳାବତୀ । ସେ ଯେମିତି ଥିଲେ ରୂପବତୀ, ସେମିତି ବି ଥିଲେ ଗୁଣବତୀ । ଯେତେବେଳେ ସେ ସାନ ଥିଲେ, ସେତେବେଳେ ତାଙ୍କ ମାତାଙ୍କର ବିୟୋଗ ଘଟିଥିଲା । ଫଳରେ ତାଙ୍କ ଲାଳନପାଳନର ଦାୟିତ୍ୱ ପଡ଼ିଥିଲା ପିତା ଭାସ୍କରାଚାର୍ଯ୍ୟଙ୍କ ଉପରେ । ପିତା ଠିକ୍ ଭାବରେ ତାଙ୍କର ଯତ୍ନ ନେଉଥିଲେ । ସେ ଯେଭଳି ଉପଯୁକ୍ତ ଶିକ୍ଷା ପାଇପାରିବେ, ସେ ଦିଗରେ ମଧ୍ୟ ଯଥେଷ୍ଟ ଧ୍ୟାନ ଦେଇଥିଲେ । ପିତାଙ୍କର ଗଣିତ ଓ ଜ୍ୟୋତିଷ ସାଧନାକୁ ଲୀଳାବତୀ ସବୁବେଳେ ଅନୁଶୀଳନ କରୁଥିଲେ । ମନରେ ସନ୍ଦେହ ଆସୁଥିଲେ ସନ୍ଦେହ ମୋଚନ ପାଇଁ ବାରମ୍ବାର ପ୍ରଶ୍ନ ପଚାରୁଥିଲେ । ବ୍ୟବହାରିକ ଦୃଷ୍ଟିକୋଣରୁ ସେ ମଧ୍ୟ ଏସବୁର ପ୍ରୟୋଗ ଓ ପରୀକ୍ଷା କରି ଚାଲିଥିଲେ । ପିତାଙ୍କ ଭଳି ସେ ମଧ୍ୟ ଗଣିତ ଓ ଜ୍ୟୋତିଷ ବିଦ୍ୟାରେ ଧୁରୀଣ ହୋଇଉଠିଲେ । ଫଳରେ ତାଙ୍କର ଖ୍ୟାତି ମଧ୍ୟ ଧୀରେ ଧୀରେ ପ୍ରଚାରିତ ହେବାକୁ ଲାଗିଲା । ସେ ସମୟରେ ସେ ଥିଲେ ଜଣେ ବିଦୁଷୀ ନାରୀ । ତାଙ୍କ ସାଧନାର ଶ୍ରେଷ୍ଠକୃତିଟି ହେଉଛି 'ଲୀଳାବତୀ ସୂତ୍ର' । ସେଥିରେ ଗଣିତ ବିଦ୍ୟା ସମାଧାନର ସୂତ୍ର ସବୁ ରହିଛି ।



ବରାହମିହିର ଥିଲେ ସେ କାଳର ଜଣେ ପ୍ରସିଦ୍ଧ ବୈଜ୍ଞାନିକ । ଜ୍ୟୋତିଷ ବିଦ୍ୟାରେ ମଧ୍ୟ ରହିଥିଲା ତାଙ୍କର ଅସାଧାରଣ ପାଣ୍ଡିତ୍ୟ 'ବୃହତ୍‌ସଂହିତା', 'ଲଘୁଜାତକ' ଓ 'ପଞ୍ଚ ସିଦ୍ଧାନ୍ତିକା' ଆଦି ଜ୍ୟୋତିଷ ଗ୍ରନ୍ଥର ସେ ରଚୟିତା । ଜ୍ୟୋତିଷ ବିଦ୍ୟାରେ ତାଙ୍କର ଉଚ୍ଚକୋଟୀର ଜ୍ଞାନ ଥିବାରୁ ସେ ବହୁ ସମ୍ମାନର ଅଧିକାରୀ ହୋଇପାରିଥିଲେ । ତାଙ୍କର ଯଶଖ୍ୟାତି ସବୁଆଡ଼େ

ବ୍ୟାପିଯାଇଥିଲା । ସେ ଥିଲେ ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟଙ୍କ ରାଜସଭାରେ ଆସନ ଅଳଙ୍କୃତ କରିଥିବା ନଅ ଜଣ ପ୍ରସିଦ୍ଧ ପଣ୍ଡିତଙ୍କ ମଧ୍ୟରୁ ଅନ୍ୟତମ । ସେମାନଙ୍କୁ 'ନବରତ୍ନ' କୁହାଯାଉଥିଲା । ଏଇ ବିଖ୍ୟାତ ଜ୍ୟୋତିର୍ବିଦ ବରାହମିହିରଙ୍କ ପୁତ୍ର ମିହିରଙ୍କ ସହିତ ଲୀଳାବତୀଙ୍କର ବିବାହ ସମ୍ପନ୍ନ ହୋଇଥିଲା ।

ଶାଶୂଘରେ ମଧ୍ୟ ଲୀଳାବତୀ ନିଜର ଗଣିତ ଓ ଜ୍ୟୋତିଷବିଦ୍ୟାର ସାଧନା ଅବ୍ୟାହତ ରଖିଲେ । ଫଳରେ ଫୁଲର ବାସ୍ନା ଭଳି ତାଙ୍କ ପ୍ରତିଭାର ମହକ ମଧ୍ୟ ଚାରିଆଡ଼େ ବ୍ୟାପିଗଲା । ପରେ ପରେ ଏ ଖବର ଯାଇ ପହଞ୍ଚିଲା ରାଜା ବିକ୍ରମାଦିତ୍ୟଙ୍କ ପାଖରେ । ସେ ତ ଥିଲେ ଜଣେ ଗୁଣଗ୍ରାହୀ ରାଜା । ବିଦ୍ୟା ଓ ଗୁଣର ବଡ଼ ଆଦର କରୁଥିଲେ ସେ । ଫଳରେ ସେ ଲୀଳାବତୀଙ୍କୁ ନେଇ ନିଜ ଦରବାରରେ ସ୍ଥାନ ଦେଇଥିଲେ । ଯାହାଦ୍ୱାରା କି ତାଙ୍କର ସମ୍ମାନ ବଢ଼ିଲା, ଆଦର ବଢ଼ିଲା ଓ ଲୋକପ୍ରିୟତା ମଧ୍ୟ ବୃଦ୍ଧି ପାଇଲା; କିନ୍ତୁ ଏଥିରେ କ୍ଷୁଣ୍ଣ ହେଲେ ଶ୍ୱଶୁର ବରାହମିହିର । ପୁତ୍ରବଧୂଙ୍କ ଲାଗି ତାଙ୍କର ସମ୍ମାନ ହାନି ଘଟିଲା ବୋଲି ସେ ଅନୁଭବ କଲେ । ନିଜକୁ ନ୍ୟୁନ ମଣିଲେ । ସେହି କାରଣରୁ ତାଙ୍କ ମନରେ କ୍ରୋଧ ଜାତ ହେଲା ପୁତ୍ରବଧୂଙ୍କ ପ୍ରତି । ସେ ଏହାର ପ୍ରତିଶୋଧ ନେବା ପାଇଁ ଚାହିଁଲେ । ଫଳରେ ପୁତ୍ରକୁ ଡାକି କହିଲେ, ''ପୁତ୍ର ! ମୋର ମାନସମ୍ମାନ, ପ୍ରସିଦ୍ଧି, ଯାହା କିଛି ଥିଲା, ସବୁ ଚୁଲିକୁ ଗଲା ତୁମ ପତ୍ନୀଙ୍କ ପାଇଁ । ଏହାର କିଛି ପ୍ରତିକାର ନ କଲେ ଆମର ବଞ୍ଚିବା ମରିବା ସହିତ ସମାନ ହେବ । ଅନ୍ୟମାନଙ୍କ ଆଗରେ ଆମେ ଆଉ ମୁଣ୍ଡ ଟେକି ଚାଲିପାରିବା ନାହିଁ । ଶେଷକୁ ଏମିତି ବି ହୋଇପାରେ ଯେ ଦରବାରରେ ଆମର ସ୍ଥାନ ମଧ୍ୟ ରହି ନପାରେ ।''

ଏସବୁ ଶୁଣି ମିହିର କହିଲେ, ''ପିତା ! ତେବେ ମୋତେ କ'ଣ କରିବାକୁ କହୁଛନ୍ତି ?''

ବରାହମିହିର କହିଲେ, ''ମୁଁ ତୁମକୁ ତୁମ ପତ୍ନୀଙ୍କ ଜିହ୍ୱା ଛେଦନ କରିବା ପାଇଁ କହୁଛି । ଫଳରେ ସେ ଆଉ ଗଣିତ କି ଜ୍ୟୋତିଷ ବିଦ୍ୟା ଚର୍ଚ୍ଚା କରିପାରିବେ ନାହିଁ । ତେବେ ଯାଇ ଆମର ସମ୍ମାନ ଓ ଆସନ ବଜାୟ ରହିବ । ଏହାକୁ ମୋର ଆଦେଶ ରୂପେ ଗ୍ରହଣ କରି ତୁରନ୍ତ କାର୍ଯ୍ୟ ସମ୍ପାଦନ କର ।''

ମିହିର ଥିଲେ ପିତୃଭକ୍ତ । ନିଜ ପତ୍ନୀଙ୍କ ପାଇଁ ଯଦି ପିତାଙ୍କ ସମ୍ମାନରେ ଆଞ୍ଚ ଆସୁଛି, ତେବେ ସେ ଯେକୌଣସି ମୂଲ୍ୟ ଦେଇ ପିତାଙ୍କ ସମ୍ମାନ ରକ୍ଷା କରିବେ । ସେଥିପାଇଁ ଯଦି ସ୍ତ୍ରୀଙ୍କର ଜିଭ କାଟିବାକୁ ପଡୁଛି, ତାହା ଯେତେ ଯନ୍ତ୍ରଣାଦାୟକ ହେଲେ ମଧ୍ୟ ସେ ତାହା କରିବାକୁ ମୋଟେ ପଛାଇବେ ନାହିଁ । ତା'ପରେ ସେ ଛୁରୀଟିଏ ଧରି ନିଜ ଶୟନକକ୍ଷରେ ପ୍ରବେଶକଲେ ଓ ପତ୍ନୀଙ୍କୁ ପିତାଙ୍କ ଆଦେଶ ଜଣାଇଲେ । ଲୀଳାବତୀ ଥିଲେ ବିଚକ୍ଷଣା, ବୁଦ୍ଧିମତୀ ଓ ବିଦୁଷୀ । ସେତେବେଳକୁ ସେ ସବୁ କିଛି ବୁଝିସାରିଥିଲେ । ସେ କହିଲେ, ''ତୁମେ ଯଦି ପିତା ଆଦେଶ ପାଳନ କରିବାକୁ ଆସିଛ, ତେବେ ମୁଁ ସେଥିରେ ବାଧା ଦେବି ନାହିଁ; କିନ୍ତୁ ତୁମକୁ ମୋର ଏକ ଅନୁରୋଧ ରକ୍ଷା କରିବାକୁ ହେବ ।''

ମିହିର କହିଲେ, ''କି ଅନୁରୋଧ କୁହ ? ସମ୍ଭବ ହେଲେ ନିଶ୍ଚୟ ରକ୍ଷାକରିବି ।''

ଲୀଳାବତୀ କହିଲେ, ''ତୁମେ ମୋର ଜିହ୍ୱା ଛେଦନ କରିବା ପରେ ମୁଁ ଖନା ହୋଇଯିବି ଆଉ କିଛି କହିପାରିବି ନାହିଁ । ତାହା ପୂର୍ବରୁ ମୋ ପାଖରେ ଜ୍ୟୋତିଷ ବିଦ୍ୟାର ଯେଉଁ ଅମୂଲ୍ୟ ସମ୍ପଦ ରହିଛି, ତାହା ତୁମକୁ ଲେଖି ରଖିବାକୁ ହେବ ଓ ପରବର୍ତ୍ତୀ ସମୟରେ ପ୍ରକାଶ କରିବାକୁ ହେବ । ତୁମର ଏତିକି କାର୍ଯ୍ୟ ଦ୍ୱାରା ଜନସାଧାରଣ ବହୁ ଭାବରେ ଉପକୃତ ହେବେ ।''

ତା'ପରେ ଲୀଳାବତୀ ବୃଷ୍ଟିପାତ ଲକ୍ଷଣ, କୃଷିକର୍ମର ବିଧିବିଧାନ, ଜାତକ ବିଚାର, ଗ୍ରହମାନଙ୍କର



ଗତିବିଧି, ଏମିତି ବହୁ ବିଷୟରେ ବଖାଣିଥିଲେ । ମିହିର ସେ ସବୁକୁ ଲେଖି ରଖିଲେ । ଏହାପରେ ସେ ପିତାଙ୍କ ଆଦେଶ ପାଳନ କରିବାକୁ ଯାଇ ଛୁରିକାଦ୍ୱାରା ଲୀଳାବତୀଙ୍କର ଜିହ୍ୱା ଛେଦନ କରିଥିଲେ । ଜିଭ କଟିଯିବା ପରେ ସେ ଆଉ କିଛି କହିପାରି ନ ଥିଲେ । ଖନା ହୋଇଯାଇଥିଲେ । ଖନା ହେବା ପୂର୍ବରୁ ସେ ଯାହା ସବୁ କହିଥିଲେ, ପରବର୍ତ୍ତୀ କାଳରେ ସେ ସବୁ 'ଖନାବଚନ' ନାମରେ ପ୍ରକାଶ ଲାଭ କରିଥିଲା । ଏଇ ଖନାବଚନର ଉପାଦେୟତା ଢେର ଅଧିକ । ସେଥିପାଇଁ ତାହା ବହୁତ ଲୋକପ୍ରିୟ । ଆଜି ମଧ୍ୟ ସମାଜରେ ଖନାବଚନର ଉଦାହରଣ ଦେବାକୁ ଲୋକେ ଭୁଲନ୍ତି ନାହିଁ ।

ଆଜି ଖନା ନାହାନ୍ତି ସତ; କିନ୍ତୁ ତାଙ୍କ ବଚନ ଇତିହାସ ହୋଇ ରହିଯାଇଛି ସବୁଦିନ ପାଇଁ ।

*ବକଡ଼ାବେଡ଼ା, ଡାବୁଗାଁ-୭୬୪୦୭୨, ନବରଙ୍ଗପୁର*

---

ବିପରୀତ ଦିଗରେ ନାଳଟିର ବାକି ଅଂଶ ନାହିଁ ।

# ବିନମ୍ର ଭାବ

ଶ୍ରୀମତୀ ସୁଷମା ମିଶ୍ର

ଈଶ୍ୱର ମନୁଷ୍ୟକୁ ପ୍ରାଣୀଜଗତରେ ଶ୍ରେଷ୍ଠ ପ୍ରାଣୀ ଭାବେ ରଚନା କରିଛନ୍ତି । ମନୁଷ୍ୟକୁ ସତ୍ୟ, ଅହିଂସା, ଦୟା, କ୍ଷମା, ନମ୍ରତା, ଅନାସକ୍ତି, ନିଷ୍କପଟତା ଭଳି ଉତ୍ତମ ଗୁଣ ପ୍ରଦାନ କରିବା ସଙ୍ଗେ ସଙ୍ଗେ ମନୁଷ୍ୟର ପରମ ଶତ୍ରୁଭାବେ ବିବେଚନା କରାଯାଇଥିବା ଲୋଭ, ମୋହ, ଗର୍ବ, ଅହଂକାର, କାମ, କ୍ରୋଧ ଆଦି ଛଅ ଗୋଟି ଦୁର୍ଗୁଣକୁ ମଧ୍ୟ ଈଶ୍ୱର ତା' ସହିତ ଯୋଡ଼ିଛନ୍ତି । ଉତ୍ତମ ସ୍ୱଭାବଗୁଡ଼ିକ ଯଦି ପିଲାଦିନରୁ ତା' ମନ ମଧ୍ୟରେ ସ୍ଥାନ ପାଏ, ତାହାହେଲେ ପିଲା ବଢ଼ିବା ସଙ୍ଗେ ସଙ୍ଗେ ସେଇ ମହତ ସ୍ୱଭାବଗୁଡ଼ିକ ମଧ୍ୟ ତା' ହୃଦୟରେ ବଢ଼ିବଢ଼ି ଚାଲେ, ଫଳରେ ସେହି ଭଲଗୁଣ ରୂପକ ଚାରା ଶେଷରେ ମହାଦ୍ରୁମରେ ପରିଣତ ହୋଇଯାଏ ଏବଂ ସେ ପରିଣତ ବୟସରେ କେବେହେଲେ ଖରାପ କାମ କରିବାକୁ ଆଗଭର ହୋଇପାରେ ନାହିଁ । ପ୍ରାଣୀ ଓ ବୃକ୍ଷ ଜଗତଠାରେ ମଧ୍ୟ ଏହାର ସୁପ୍ରଭାବ ଓ କୁପ୍ରଭାବ ଦେଖିବାକୁ ମିଳେ । ଏହି ସମ୍ବନ୍ଧରେ ଗୋଟିଏ ସୁନ୍ଦର ଉପାଖ୍ୟାନ ଅଛି—

ଥରେ ଜଣେ ସାଧୁ ଗୋଟିଏ ଜଙ୍ଗଲ ରାସ୍ତା ଦେଇ ଯାଉଥିଲେ । ରାସ୍ତାର ଦୁଇପଟେ ଛୋଟ ଛୋଟ ବଣବୁଦା ଥିଲା ଏବଂ ତା ମଧ୍ୟରେ ଗୋଟିଏ ବଡ଼ ଆକାଶିଆ ଗଛ ଥିଲା । ସାଧୁ ସେହିବାଟରେ ଯିବା ସମୟରେ ପଥଶ୍ରମ ଲାଘବ କରିବା ପାଇଁ ସେହି ବଡ଼ଗଛ ଛାୟାରେ କିଛି ସମୟ ବିଶ୍ରାମ ନେଲେ । ତାକୁ ତା'ର ଭଲମନ୍ଦ କଥା ପଚାରିଲେ । ଗଛ ଗର୍ବର ସହିତ ନିଜ ବଡ଼ପଣିଆର ପ୍ରଶଂସା କରି ସାଧୁଙ୍କୁ କହିଲା, ''ମହାଶୟ ଦେଖନ୍ତୁ, ମୁଁ

ମୋର ଶାଖା-ପ୍ରଶାଖାମାନ ମେଲାଇ କେତେ ବଡ଼ ହୋଇଛି । ବହୁତ ଲୋକଙ୍କୁ ଛାୟା ପ୍ରଦାନ କରୁଛି । ପାଖରେ ଥିବା ବଣବୁଦାମାନଙ୍କୁ ଉପହାସ କରି କହିଲା, ସେମାନେ କେତେ ଛୋଟ, ତାଙ୍କର କ'ଣ ବା ଚାରା ଅଛି, ସେମାନେ କିଛି କରିପାରିବେ ।''

ସାଧୁ ସେହି ଅନୁରୂପ ପ୍ରଶ୍ନ ବଣବୁଦାମାନଙ୍କୁ ପଚାରିଲେ । ଛୋଟ ଛୋଟ ବଣବୁଦା ଆକାଶିଆ ଗଛର କଥା ଶୁଣି ଆଉ ବା କ'ଣ କହିବେ । ସେମାନେ ଆକାଶିଆ ଗଛର ଏହି ବଡ଼ିମା ଦେଖି କହିଲେ, ''ଈଶ୍ୱରଙ୍କ ସୃଷ୍ଟିରେ ଆମେ ଯେଉଁ ଅବସ୍ଥାରେ ଅଛୁ, ଖୁସିରେ ଅଛୁ । ବଡ଼ ବଡ଼ ପ୍ରାଣୀଙ୍କୁ ନହେଲେ ମଧ୍ୟ ଛୋଟ ଛୋଟ ପ୍ରାଣୀମାନଙ୍କୁ ଛାୟା ପ୍ରଦାନ କରି ସେତିକିରେ ଆମେ ଆନନ୍ଦ ପାଉଛୁ ।''

ଏହାପରେ ସାଧୁ ସେ ସ୍ଥାନରୁ ଚାଲିଗଲେ । କିଛିଦିନ ବିତିଗଲା ପରେ ପୁନର୍ବାର ସାଧୁ ସେହି ବାଟ ଦେଇ ଫେରିଲେ । ଦେଖିଲେ, ବଡ଼ ଆକାଶିଆ ଗଛଟିର କୌଣସି ଚିହ୍ନବର୍ଣ୍ଣ ନଥିଲା; ଅଥଚ ଛୋଟ ଛୋଟ ବଣବୁଦାଙ୍କର ବଂଶ ବଢ଼ିଯାଇଥିଲା । ସାଧୁ ବଣବୁଦାଙ୍କୁ ପଚାରିଲେ– ତୁମ ମାନଙ୍କର ବଂଶ ବଢୁଛି; ଅଥଚ ଏଠାରେ ଯେଉଁ ବଡ଼ ଆକାଶିଆ ଗଛଟି ଥିଲା, ଗଲା କୁଆଡ଼େ ? ତା'ର ଚିହ୍ନବର୍ଣ୍ଣ ଦେଖିବାକୁ ମିଳୁନାହିଁ ।

ବଣବୁଦାମାନେ ନମ୍ରଭାବରେ କହିଲେ, ''ମହାଶୟ, ଦିନେ ଭୟଙ୍କର ତୋଫାନ ମାଡ଼ିଆସିଲା । ତୋଫାନ ବେଗ ଏତେ ଭୟଙ୍କର ଥିଲା ଯେ ବଡ଼ ବଡ଼ ଗଛ ସବୁ ସମୂଳ ଉପୁଡ଼ି ପଡ଼ିଲେ । ସେମାନଙ୍କ ସହିତ ଆକାଶିଆ ଗଛ ମଧ୍ୟ ଉପୁଡ଼ିପଡ଼ିଲା ।'' ସାଧୁ ବହୁତ ଦୁଃଖିତ ହେଲେ ଏବଂ ତାଙ୍କୁ ପଚାରିଲେ– ତୁମେମାନେ ଏଡ଼େ ଭୟଙ୍କର ତୋଫାନରୁ ରକ୍ଷାପାଇଲ କିପରି ? ବଣବୁଦାମାନେ ଉତ୍ତରଦେଲେ– ଆମେ ନିଜକୁ ଛୋଟ ବୋଲି ଜାଣିଥିଲୁ । ତେଣୁ ତୋଫାନ ସମୟରେ ଆମେ ସମସ୍ତେ ମୁଣ୍ଡ ତଳକୁ କରିଦେଲୁ । ଆମ ମୁଣ୍ଡ ଉପର ଦେଇ ତୋଫାନ ଚାଲିଗଲା । ତୋଫାନ ସମୟରେ ଆକାଶିଆ ଗଛ ସେହିପରି ଠିଆ ହୋଇ ରହିଥିଲା । ତେଣୁ ତୋଫାନ ଆଘାତରେ ସେ ଭୂମିରେ ଲୋଟିପଡ଼ିଲା । ପାଖ ଗ୍ରାମର ଲୋକମାନେ ତାକୁ ଖଣ୍ଡ ଖଣ୍ଡ କରି କାଟି ନେଇଗଲେ ।

ଅହଂଭାବ ଯୋଗୁ ଆକାଶିଆ ଗଛର ଅଚିରେ ପତନ ହେଲା । ନମ୍ରତା ଭାବ ଥିବା ଏବଂ ଅହଂଭାବ ନ ଥିବା ଯୋଗୁଁ ବଣବୁଦାଙ୍କର କିଛି କ୍ଷତି ହେଲା ନାହିଁ । ବିନମ୍ରତା ଓ ଅହଂଭାବହୀନ ଗୁଣ ଯୋଗୁଁ ସାମନାରେ ଆସୁଥିବା ଅନେକ ବିପଦ ଅକ୍ଲେଶରେ ଟାଳି ଦିଆଯାଇପାରିବ ।

ତେଣୁ ପିଲାମାନେ, ଶୈଶବରୁ ଏହି ମହତ୍ ଜ୍ଞାନ ଲାଭ କରି ତଦନୁସାରେ ଜୀବନର ପ୍ରତି କ୍ଷେତ୍ରରେ ଅଗ୍ରସର ହେବା ବାଞ୍ଛନୀୟ ।

*ନୂଆପଡ଼ା, ବାଲିସାହି, ରୁଚିଗଳି, କଟକ- ୭୫୩୦୧୦*

ଉତ୍ତର -- 'A'




ଆଜିକାଲି ସାହିତ୍ୟିକ ଗୋଷ୍ଠୀରେ ସଭାସମିତି ପ୍ରାଦୁର୍ଭାବ ବଢ଼ିଚାଲିଛି । ପୁସ୍ତକ ଉନ୍ମୋଚନ, କବିତା ପାଠୋତ୍ସବ, ସମ୍ମାନ ପ୍ରଦାନ ସମାରୋହ ଇତ୍ୟାଦି ଆମ ଓଡ଼ିଆ ସାହିତ୍ୟର ମୁଖ୍ୟ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇ ଚତୁର୍ଦ୍ଦିଗ ବ୍ୟାପିବାରେ ଲାଗିଛି ।

କିନ୍ତୁ ଆମେ ଦେଖିବା ସଭାସମିତିଗୁଡ଼ିକ ସୂଚାରୁରୂପେ ସବୁ ଜାଗାରେ ସମ୍ପନ୍ନ ହୋଇପାରୁନାହିଁ ।

ଥରେ ଗୋଟିଏ ସାହିତ୍ୟ ସଭାକୁ ମୁଖ୍ୟଅତିଥିଙ୍କୁ ନିମନ୍ତ୍ରଣ କରାଗଲା । ସେ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି-ବିଶେଷ । ସେ ପ୍ରଥମେ ଟିକିଏ ଅରାଜି ହେଲେ, ତାଙ୍କର ଶରୀର ସୁସ୍ଥ ନ ଥିଲା । ତେଣୁ ସାହିତ୍ୟିକମାନେ ଭାବିଲେ, ସେ ଆସିବେ ନାହିଁ । ଆଉ ଜଣେ ଅତିଥିଙ୍କୁ ମୁଖ୍ୟ ଭାବେ ଡାକି ଆଣିଲେ; ମାତ୍ର ଦୁଃଖର କଥା, ସଭାରେ ପ୍ରଥମ ଅତିଥି ଆସି ପହଞ୍ଚିଗଲେ । କ'ଣ କରାଯିବ ? ଶେଷରେ ତାଙ୍କୁ ବରେଣ୍ୟ ଅତିଥି ଭାବେ ମଞ୍ଚରେ ବସିବାକୁ ହେଲା ।

ଆଉ ଥରେ ସେମିତି ମୁଁ ଗୋଟିଏ ଶ୍ରାଦ୍ଧୋତ୍ସବକୁ ଯାଇଛି, ସେଇଠି ଗୋଟିଏ ଅନୁଷ୍ଠାନର ସଭାପତି ଦେଖା ହୋଇ କହିଲେ, ''ଆଜ୍ଞା, ଅମୁକଦିନ ଆମର ସଭା ହେବ, ଆପଣ ଅତିଥି ହୋଇ ଯିବେ ?'' ମୁଁ ତାଙ୍କ ମୁହଁକୁ ଚାହିଁଲି, କହିଲି, 'ଆଚ୍ଛା ଦେଖିବା ।'

ଏ ସବୁ କ'ଣ ? ଅତିଥିମାନଙ୍କୁ ଯେଉଁଠି ଦେଖିଲେ, ସେଇଠି ଡାକିଦେବା କ'ଣ ସୌଜନ୍ୟତା ? ସଭାର ମର୍ଯ୍ୟାଦା ରକ୍ଷା କରିବା ନିହାତି ଜରୁରୀ ନା ନାହିଁ ?

ପ୍ରଥମେ ଅତିଥିଙ୍କ ଘରକୁ ଯାଇ ତାଙ୍କର ଅନୁମତି ଆଣିବା ବା ଫୋନ୍‌ରେ ପଚାରିବା । ସେ ଯଦି 'ହଁ' କଲେ, ତେବେ ତାଙ୍କୁ ଯାଇ ଏକ ସୌଜନ୍ୟମୂଳକ ପତ୍ର ଦେଇ ସାକ୍ଷାତ କରିବା । ସେ କେମିତି ଆସିବେ, ସଭାକୁ ଆସିବା ପାଇଁ ତାଙ୍କର କୌଣସି ଯାତାୟାତର ସୁବିଧା ଅଛି କି ନାହିଁ– ଇତ୍ୟାଦି ବୁଝିବା ଅନୁଷ୍ଠାନର ମୁଖ୍ୟ କର୍ତ୍ତବ୍ୟ ହେବା ଉଚିତ ।

ଦ୍ୱିତୀୟ କଥା ହେଲା, ତାଙ୍କ ସହିତ ଆଉ କେଉଁ ଅତିଥିଙ୍କୁ ଡକାଯାଇଛି– ମୁଖ୍ୟବକ୍ତା କିଏ, ସଭାପତି କିଏ, ସମ୍ମାନିତ ଅତିଥି କିଏ ଇତ୍ୟାଦି ତାଙ୍କୁ ଜଣେଇବା ଆବଶ୍ୟକ । କାରଣ ଅତିଥିମାନଙ୍କର ମର୍ଯ୍ୟାଦା ଅନୁସାରେ ପରସ୍ପର ମଧ୍ୟରେ ସମାନତା ରହିବା ଭଳି ଉପଯୁକ୍ତ ଅତିଥି ମଧ୍ୟ ରହିବା ଆବଶ୍ୟକ ।

ଗୋଟିଏ ପୁସ୍ତକ ଉନ୍ମୋଚନ ସଭାରେ ମୁଁ ଲକ୍ଷ୍ୟ କରିଛି ମୁଖ୍ୟବକ୍ତା, ମୁଖ୍ୟ ଅତିଥି ଓ ସଭାପତିଙ୍କ ମଧ୍ୟରେ ବ୍ୟକ୍ତିତ୍ୱର ତାରତମ୍ୟ ବାରି ହୋଇପଡୁଥିଲା ।

ତା'ପରେ ଆଉ ଗୋଟିଏ କଥା ମୁଁ ଲକ୍ଷ୍ୟ କରିଛି– ସଭାପତି ସଭାକୁ ପରିଚାଳନା କରିବା ପାଇଁ ଅପେକ୍ଷାରତ । ମାତ୍ର ଆଉ ଜଣେ ବ୍ୟକ୍ତି ସେହି ସଭାର କାର୍ଯ୍ୟକ୍ରମ ବିଷୟରେ ସଭା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପରିଚାଳନା କରୁଛନ୍ତି । ସଭାପତି ଆସନରେ କେବଳ ଦ୍ରଷ୍ଟା ଭାବରେ ସେ ନିରବରେ ବସି ରହି ଚାରିଆଡ଼କୁ ଲକ୍ଷ୍ୟ କରୁଛନ୍ତି । ଶେଷରେ ତାଙ୍କୁ କିଛି ବକ୍ତବ୍ୟ ଦେବା ପାଇଁ କୁହାଗଲା, ବୋଧହୁଏ ଦୟାକରି ।

ଶେଷ କଥା ହେଲା– ଜଣେ ବ୍ୟକ୍ତିଙ୍କୁ 'ଧନ୍ୟବାଦ' ଦେବାପାଇଁ ମଞ୍ଚ ଉପରକୁ ଡକାଯାଏ; ମାତ୍ର

ସେତେବେଳେ ଦର୍ଶକ କେହି ନ ଥାନ୍ତି, ସମସ୍ତେ ଯେ ଯାହାର ଟିଫିନ୍ ଖାଇ ସଭାରୁ ନିଷ୍କ୍ରାନ୍ତ ହୋଇଥାନ୍ତି ।

ଉପରୋକ୍ତ ଅବ୍ୟବସ୍ଥା ଦ୍ୱାରା ସଭାଟିର ସୌନ୍ଦର୍ଯ୍ୟ, ମର୍ଯ୍ୟାଦା ନଷ୍ଟହେବା ସହିତ ଅତିଥିଅଭ୍ୟାଗତଙ୍କର ମର୍ଯ୍ୟାଦାକୁ ମଧ୍ୟ କ୍ଷୁଣ୍ଣ କରିଥାଏ ।

ଅତିଥିମାନଙ୍କୁ ମର୍ଯ୍ୟାଦାଜନକ ଭାବେ ଆମନ୍ତ୍ରଣ କରିବା ଠାରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ ସଭାଟିକୁ ସର୍ବାଙ୍ଗ-ସୁନ୍ଦର ଭାବେ ଶେଷ କରିବା ଆମ ସାହିତ୍ୟିକମାନଙ୍କର କର୍ତ୍ତବ୍ୟ ହେବା ଉଚିତ ।

**–ଅନସୂୟା ନନ୍ଦ**

---



# ଦେଶ ତ ଭାରତବର୍ଷ

ଶ୍ରୀ ହଂସନାଥ ମୁଦୁଲି

ସଭିଏଁ କହୁଛ ମୁଁ କାଳେ ତୁମ
ସୁନ୍ଦର ଭାରତବର୍ଷ
ଜୀବନରୁ ବଳି ତୁମ ପାଇଁ ମୁହିଁ
ସରଗରୁ ବଡ଼ ଦେଶ ।

ମୋ ପାଣି ପବନେ ହୋଇଅଛ ବଡ଼
ଜ୍ଞାନୀ ଆଉ ବଳବାନ
ମୋ' ପାଇଁ ତୁମ ମୁଣ୍ଡଟେକି ଚାଲ
ହୋଇଛ ବି ଧନବାନ ।

ତଥାପି ମୋହର କହିବାକୁ ଅଛି
ତୁମକୁ ଗୋଟିଏ କଥା
ଭରସା ରହିଛି ମାନିବ ତାହାକୁ
ଦୂର କରିବ ମୋ ବ୍ୟଥା ।

ଦେହକୁ ମୋହର ଅଳିଆ ଅସନା
କରୁଛ ନ ଭାବି କିଛି
ଯେଉଁଠାରେ ଇଚ୍ଛା ସେଠି ପକାଉଛ
ମଇଳା ଯେତେକ ବାଛି ।

ଅସୁନ୍ଦର ଦିଶେ, ତା' ସାଙ୍ଗକୁ ପୁଣି
ରୋଗ ବଇରାଗ ମାଡ଼େ
ତୁମପାଇଁ ହେଲେ ଶରୀର କଷଣ
ମୋ' ଦୁଃଖ କିବା ଛାଡ଼େ !

ମୁଁ ଚାହେଁ ସଭିଏଁ ସ୍ୱଚ୍ଛତା ଆଡ଼କୁ
ବଢ଼ାନ୍ତୁ ଗୋଟିଏ ପାଦ
ସଚେତନତାର ମନ୍ତ୍ର ଜାଗିଉଠୁ
ଦୂର ହେଉ ଅପବାଦ ।

ମାଆ ବୋଲି ମୋତେ ମାନୁଛ ଯଦିବା
ଦୂରେଇବ ମାଆ ଦୁଃଖ
ଆଜିର ଦିବସେ ଶପଥ କରିଣ
ଆଗାମୀ ଦିନରେ ରଖ ।

ମୁଁ ଚାହେଁ ମୋର ରୂପ ହୋଇ ଥାଉ
ତୁମ ଆଖିରେ ସରସ
ବିଦେଶ ମାଟିରେ ସମସ୍ତେ କୁହନ୍ତୁ
ଦେଶ ତ ଭାରତବର୍ଷ !

*ଖଣ୍ଡଗିରି (ଡୁମୁଡୁମା-କ) ଭୁବନେଶ୍ୱର-୭୫୧୦୩୦*

ଉତ୍ତରାଁ

## ଆଇ.ଏସ୍. ଜୋହରଙ୍କର: ବୁଦ୍ଧିମତ୍ତାର ଉତ୍ତର

ଶ୍ରୀ କାଞ୍ଚନାରାୟଣ ମହାନ୍ତି

ସ୍ୱର୍ଗତ ଇନ୍ଦରସେନ ଜୋହର ଭାରତୀୟ ଚଳଚ୍ଚିତ୍ର ଜଗତର ଜଣେ ପ୍ରଖ୍ୟାତ ବ୍ୟକ୍ତିତ୍ୱ, ଚିତ୍ରତାରକା, ଲେଖକ ଓ ସମାଲୋଚକ । ଦୀର୍ଘ ପଚାଶବର୍ଷ ଧରି ସେ 'ଫିଲମ୍ ଫେୟାର' ପତ୍ରିକାରେ 'କୋଶ୍ଚିନ୍ ବକ୍ସ' ଅର୍ଥାତ୍ ପ୍ରଶ୍ନୋତ୍ତର ବିଭାଗର ଦାୟିତ୍ୱରେ ଥିଲେ । ପାଠକମାନଙ୍କର ବିବିଧ ପ୍ରଶ୍ନଗୁଡ଼ିକୁ ସେ ଏତେ ସୁନ୍ଦର ଭାବରେ ଉପସ୍ଥାପନା କରୁଥିଲେ, ଯେଉଁଥିରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଓ ହାସ୍ୟରସର ଗଭୀର ଦଖଲ ବାସ୍ତବ ଜୀବନରେ କେତେ ଥିଲା, ତାହାର ପ୍ରମାଣ ମିଳିଥାଏ ।



ଆଇ.ଏସ୍.ଜୋହରଙ୍କର ମୃତ୍ୟୁପରେ ଦୀର୍ଘ ପଚାଶବର୍ଷର ଅସଂଖ୍ୟ ପ୍ରଶ୍ନ- ଉତ୍ତର ମଧ୍ୟରୁ ସର୍ବୋତ୍ତମ ପଚାଶଟି ପ୍ରଶ୍ନର ଉପସ୍ଥାପନା ସେଇ 'ଫିଲମ୍ ଫେୟାର' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେଥିରୁ ମାତ୍ର କେତୋଟିର ଉପସ୍ଥାପନା କରାଯାଉଛି । ପାଠକମାନେ ଜୋହରଙ୍କର ପାଣ୍ଡିତ୍ୟକୁ ହୃଦ୍‌ବୋଧ କରିପାରିବେ ।

**ପ୍ରଶ୍ନ –**

୧- ଅନେକ ସମୟରେ କୁହାଯାଇଥାଏ ଯେ ଅପରାଧୀମାନେ ଜନ୍ମ ହୋଇ ନ ଥାନ୍ତି, ସେମାନଙ୍କୁ ତିଆରି କରାଯାଇଥାଏ, ଆପଣ ଏଥିରେ ଏକମତ କି ?

ଉ– ସେମାନେ ମଧ୍ୟ ମରନ୍ତି ନାହିଁ, ଫାଶି ପାଆନ୍ତି ।

୨- ନେପୋଲିୟନ୍ କହିଥିଲେ– ଏ ଦୁନିଆରେ କିଛି ଅସମ୍ଭବ ନୁହେଁ, ଆପଣଙ୍କ ମତ ?

ଉ– ନେପୋଲିୟନ୍ କେବେ ଟୁଥ୍‌ପେଷ୍ଟକୁ ଖାଲି ଟିଉବ୍ ଭିତରେ ଭର୍ତ୍ତିକରିବାକୁ ଚେଷ୍ଟା କରି ନ ଥିଲେ ।

୩- ମୁଁ ଆତ୍ମପ୍ରଶଂସା କରୁନାହିଁ ମି. ଜୋହର, ମୋ ସ୍ତ୍ରୀ ମୋତେ ପୃଥିବୀର ଅଷ୍ଟମ ଆଶ୍ଚର୍ଯ୍ୟ ବୋଲି ମନେକରିଥାନ୍ତି ।

ଉ– ତାଙ୍କର ଅନ୍ୟ ସାତଟି ଆଶ୍ଚର୍ଯ୍ୟ କେଉଁମାନେ ?

୪- ଆମେ ଯେତେବେଳେ ବିରକ୍ତିରେ– 'ନର୍କକୁ ଯା' ବୋଲି ଗାଳିଦେଉ, ନର୍କ ଲୋକମାନେ କେଉଁଠିକି ଯିବାକୁ ଗାଳିଦେବେ ?

ଉ– ଭାରତକୁ ।

୫- ଚିତ୍ରତାରକାମାନେ କାହିଁକି ଆପଣଙ୍କୁ ପ୍ରଶ୍ନ କରିବାକୁ

ଇଚ୍ଛୁକ ନୁହଁନ୍ତି ?

ଉ– କାରଣ ଏଇ ପ୍ରଶ୍ନୋତ୍ତର ବିଭାଗଟି ବୁଦ୍ଧିମାନ ପ୍ରଶ୍ନକର୍ତ୍ତାମାନଙ୍କ ପାଇଁ ଉଦ୍ଦିଷ୍ଟ ।

୬– ମୁଁ ଗୋଟିଏ ରେଡିଓ କିଣିବି କିମ୍ବା ସ୍ତ୍ରୀଟିଏ ଆଣିବି ଠିକ୍ କରିପାରୁନାହିଁ; ଉପଦେଶ ଦେବେ କି ?

ଉ– ରେଡିଓଟିଏ କିଣ । ନିହାତି ସେଇଟାକୁ ତ ବନ୍ଦ କରିପାରିବ ।

୭– ଟ୍ରେନ୍ ଛାଡ଼ିଲାବେଳେ ଜଣେ ଆମେରିକାର ଲୋକ ପଛକୁ ଫେରି ନଚାହିଁ ଚାଲିଯାଏ, ଜଣେ ଇଂରେଜ ନିଜେ କିଛି ଛାଡ଼ିଛି କି ନାହିଁ ଦେଖିବାକୁ ପଛକୁ ଚାହେଁ, ଜଣେ ସ୍କଟିଶ୍ ଅନ୍ୟ କେହି କିଛି ଛାଡ଼ିଗଲା କି ପଛକୁ ଚାହିଁ ଦେଖେ, ଆମେ କ'ଣ କରୁ ?

ଉ– ଟ୍ରେନ୍‌ର କିଛି ଅଂଶ ପଛରେ ରହିଯାଇଛି କି ? ଫେରି ଚାହୁଁ ।

୮– ଭାରତୀୟ ସ୍ତ୍ରୀଲୋକମାନେ ସେମାନଙ୍କର ସ୍ୱାମୀଙ୍କର ନାଁ ଧରନ୍ତି ନାହିଁ କାହିଁକି ?

ଉ– ଭାରତୀୟ ସ୍ତ୍ରୀଲୋକମାନେ କୌଣସି ଅଶୁଭର ନାଁ ଧରନ୍ତି ନାହିଁ ।

୯– ମୁଁ ଯଦି ତୁମର ସ୍ତ୍ରୀ ହୋଇଥାନ୍ତି, ତେବେ ବମ୍ବେର ସର୍ବୋଚ୍ଚ ଅଟ୍ଟାଳିକା ଉପରୁ ତଳକୁ ଠେଲିଦେଇଥାନ୍ତି । ତୁମେ ?

ଉ– ମୁଁ ଯଦି ତୁମର ସ୍ୱାମୀ ହୋଇଥାନ୍ତି, ଆନନ୍ଦରେ ତଳକୁ ଡେଇଁପଡ଼ିଥାନ୍ତି ।

୧୦– ଲୋକମାନେ ଦୁଃଖ ସମୟରେ ଭଗବାନଙ୍କୁ ଡାକନ୍ତି; କିନ୍ତୁ ସୁଖ ସମୟରେ ଡାକନ୍ତି ନାହିଁ କାହିଁକି ?

ଉ– କାରଣ ସେମାନେ ଭଗବାନଙ୍କୁ ଡାକି ସୁଖ ସମୟକୁ ନଷ୍ଟ କରିବାକୁ ଚାହାଁନ୍ତି ନାହିଁ ।

## ଚିରନିଦ୍ରାରେ ବର୍ଷୀୟାନ୍ କଳାକାରଗଣ

ଓଡ଼ିଆ ସଙ୍ଗୀତର କଣ୍ଠଶିଳ୍ପୀ, ସଂଗୀତ ନିର୍ଦ୍ଦେଶକ, ଆକାଶବାଣୀ କଟକ କେନ୍ଦ୍ରର ସ୍ୱର ସଂଯୋଜକର ରାଖାଲ ମହାନ୍ତି ଅଠାଅଶୀ ବର୍ଷ ବୟସରେ ଶେଷନିଶ୍ୱାସ ତ୍ୟାଗ କରିଛନ୍ତି । ପଟାମୁଣ୍ଡେଇରେ ୧୯୩୨ ମସିହାରେ ଜନ୍ମ ସ୍ୱର୍ଗତ ମହାନ୍ତି ଏପ୍ରିଲ ୧୪ ତାରିଖ ଦିନ ସିଲଭରସିଟି କଟକର ବାଦାମବାଡ଼ିରେ ଥିବା ତାଙ୍କ ନିବାସରେ କଳାକାର ଜୀବନରୁ ଅବ୍ୟାହତି ନେଇଛନ୍ତି । ଯେଉଁ ଓଡ଼ିଆ ସିନେମାରେ ସ୍ୱର ସଂଯୋଜନା କରି ସେ ପ୍ରଶଂସିତ ହୋଇଛନ୍ତି, ସେଗୁଡ଼ିକ ହେଲା– 'ଘର-ସଂସାର', 'ଅମରପ୍ରେମ', 'ତ୍ରିନାଥମେଳା', 'ଅକ୍ଷିତୃତୀୟା' ଇତ୍ୟାଦି । ସେ ସଂଗୀତସୁଧାକର ବାଳକୃଷ୍ଣ ଦାଶ ମେମୋରିଆଲ ଆୱାର୍ଡ଼–୨୦୧୭ ଏବଂ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଆୱାର୍ଡ ଲାଭ କରିଛନ୍ତି ।




ଅକ୍ଷି-ତୃତୀୟା ଚଳଚ୍ଚିତ୍ରର ଦୃଶ୍ୟ

ବାସୁଦେବ ରଥ ଓଡ଼ିଆ ସିନେଜଗତର ପ୍ରସିଦ୍ଧ ସଂଗୀତ ନିର୍ଦ୍ଦେଶକ । ଏପ୍ରିଲ ଆଠ ୨୦୧୯ ମସିହାରେ ତାଙ୍କର ୬୮ ବର୍ଷ ବୟସରେ ମସ୍ତିଷ୍କ ଆଘାତଜନିତ ଅସୁସ୍ଥତା କାରଣରୁ ଦେହାନ୍ତ ଘଟିଛି । ଏହା ଓଡ଼ିଆ ଚଳଚ୍ଚିତ୍ର ଜଗତ ପାଇଁ ଅପୂରଣୀୟ କ୍ଷତି ।



ସେ ତାଙ୍କର ଚଳଚ୍ଚିତ୍ର ଜୀବନ ୧୯୭୭ ମସିହାର ସୁପରହିଟ୍ ଛବି ସାକ୍ଷୀ ଗୋପୀନାଥରୁ ଆରମ୍ଭ କରିଥିଲେ। 'ଚିହ୍ନା ଅଚିହ୍ନା' ଛବିରେ 'ଝୁମୁକା ଟିକେ ତୁ ହଲେଇ ଦେ' ଗୀତର ମିଠାରେ ସେ ଶ୍ରୋତାମାନଙ୍କର ହୃଦୟ ଦଖଲ କରିନେଇଥିଲେ । ତାଙ୍କର ଅନ୍ୟାନ୍ୟ ସଫଳ ଛବିଗୁଡ଼ିକର ହିଟ୍ ଗୀତଗୁଡ଼ିକ ହେଲା– ମାଆ ତୁମେ ଜଗତର ସାହା ଭରସା, ସାଗର କୂଳେ ଦିନେ ଦେଖିଲି ଝିଅଟିଏ, ଲାଗିଛି ଡୋରି ଯିବି ମୁଁ ପୁରୀ–ଏମିତି ଅନେକ।



ସମ୍ବର୍ଦ୍ଧନା ସମାରୋହରେ ସଙ୍ଗୀତଜ୍ଞ ରାଖାଲ ମହାନ୍ତି

ପ୍ରାୟ ୧୫୦ରୁ ଅଧିକ ଓଡ଼ିଆ ଛବି ଏବଂ ୫୦ରୁ ଅଧିକ ମ୍ୟୁଜିକ୍ ଆଲବମ୍‌ରେ ସେ ନିଜକୁ ସଫଳ ନିର୍ଦ୍ଦେଶକ ଭାବେ ପ୍ରମାଣିତ କରିଛନ୍ତି ଏବଂ ପ୍ରଶଂସା ଭାଜନ ହୋଇପାରିଛନ୍ତି । ବାସୁଦେବ ରଥଙ୍କର ନିଧନ ଓଡ଼ିଆ ଚଳଚ୍ଚିତ୍ର ଜଗତର ଏକ ସ୍ୱର୍ଣ୍ଣିମ ସମୟର ତାରାଙ୍କୁ ହରାଇଲା ବୋଲି ସଂଗୀତ ଓ ଚିତ୍ର ଜଗତର ବରିଷ୍ଠ ଓ ନବୀନ କଳାକାର ଓ ନିର୍ଦ୍ଦେଶକମାନେ ଶୋକବ୍ୟକ୍ତ କରିଛନ୍ତି ।

କଟକ-୮



---



# ପୁସ୍ତକ ପରିଚୟ

**ହାତୀ ନେ ଘୋଡ଼ା ନେ-- ଲେଖକ- ଡକ୍ଟର ରାଜକିଶୋର ପାଢ଼ୀ,** କୋଟପୁର, ଧର୍ମଶାଳା, ଯାଜପୁର । ମୂଲ୍ୟ-୧୦୦ଟଙ୍କା। ଦୂରଭାଷ- ୯୨୩୮୫୧୯୮୧୫।

୫୬ଟି ନାନାବାୟା ଗୀତ ଏହି ଡିମେଇ ୧/୪ ଆକାରରେ ସନ୍ନିବେଶିତ । ପ୍ରତ୍ୟେକ ପୂରା ପୃଷ୍ଠା ରଙ୍ଗିନ ଚିତ୍ର ସହିତ ମାତ୍ର ଚାରିଧାଡ଼ି ନାନାବାୟା ଗୀତଗୁଡ଼ିକ ବଡ଼ ବଡ଼ ଅକ୍ଷରରେ ଲିଖିତ ଖୁବ୍ ଆକର୍ଷଣୀୟ ହୋଇଛି । ପିଲାଙ୍କ ଦୃଷ୍ଟିକୁ ଚିତ୍ରଗୁଡ଼ିକ ଆକର୍ଷିତ କରିବ ନିଶ୍ଚୟ ।

ରଙ୍ଗିନ ପ୍ରଚ୍ଛଦରେ ଦୁଇଟି ପିଲାଙ୍କର ଚିତ୍ର ଖୁବ୍ ଆକର୍ଷଣୀୟ । ପୁସ୍ତକଟି ଶିଶୁ-ପାଠକଙ୍କ ଦ୍ୱାରା ଆକର୍ଷିତ ହେବାର ଆଶା ରଖୁଛୁ ।

**ଏକାମ୍ର କୁସୁମ-- ସମ୍ପାଦକ- ଶ୍ରୀ ଶରତ କୁମାର ବିଶ୍ୱାଳ,** ନନ୍ଦନକାନନ ବିଦ୍ୟାଳୟ, ଭୁବନେଶ୍ୱର, ସହଯୋଗ ରାଶି-୩୦ଟଙ୍କା।

ଏକାମ୍ର ଶିଶୁ ସାହିତ୍ୟ ସଂସଦର ଚତୁର୍ଦ୍ଦଶତମ ବାର୍ଷିକ ଉତ୍ସବ ମୁଖପତ୍ରଟି ଆମର ହସ୍ତଗତ ହୋଇଛି । ଏହି କ୍ରାଉନ୍ ଆକାରର ମୁଖପତ୍ରଟିରେ ବିଶିଷ୍ଟ ଶିଶୁ-ସାହିତ୍ୟିକମାନଙ୍କ ଦ୍ୱାରା ରଚିତ କବିତା ସ୍ଥାନିତ ହୋଇଛି । ଏହା ବ୍ୟତୀତ ଶିଶୁ ସାହିତ୍ୟ ସମାଚାରରେ ସାହିତ୍ୟ, ସଂସ୍କୃତି ମହୋତ୍ସବର ବିସ୍ତୃତ ବିବରଣୀ ଏଥିରେ ଦିଆଯାଇଛି । ମୁଖପତ୍ରଟିର ରଙ୍ଗିନ ପ୍ରଚ୍ଛଦରେ ଆମର ସଂସ୍କୃତିର ଐତିହ୍ୟ ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କ ଚକ୍ର ତଥା ଧଉଳିଗିରିର ଚିତ୍ର ପତ୍ରିକାଟିକୁ ମର୍ଯ୍ୟାଦାସମ୍ପନ୍ନ କରିପାରିଛି ।

**ବନ୍ଧୁତାର ସୀମା- ଲେଖକ- ଶ୍ରୀ ଫକୀର ଚରଣ ପାଢ଼ୀ,** ପାଳସାହି, ରେଞ୍ଚ, ଖୋର୍ଦ୍ଧା-୭୫୨୧୧୪ । ମୂଲ୍ୟ- ୯୫ ଟଙ୍କା । ଦୂରଭାଷ- ୯୫୮୩୩୦୪୦୯୯ ।

ଏହି ଡିମେଇ ଆକାରର ପୁସ୍ତକଟିରେ ସାତୋଟି ଛୋଟ ଛୋଟ ଗଳ୍ପ ସନ୍ନିବେଶିତ । ପ୍ରତ୍ୟେକ ଗଳ୍ପରେ ସୁଦୃଶ୍ୟ ବଡ଼ ବଡ଼ ଚିତ୍ର ରହିଛି । ବଡ଼ ବଡ଼ ଅକ୍ଷରରେ ଲିଖିତ ଗଳ୍ପଗୁଡ଼ିକ ଶିକ୍ଷଣୀୟ ତଥା ମୂଲ୍ୟବୋଧଭିତ୍ତିକ, ଯାହାକୁ ପାଠକଲେ ଶିଶୁ-କିଶୋର ପାଠକମାନେ ବହୁତକିଛି ଜ୍ଞାନ ଆହରଣ କରିପାରିବେ । ରଙ୍ଗିନ ପ୍ରଚ୍ଛଦରେ ବିଷୟବସ୍ତୁ ଅନୁଯାୟୀ ସୁନ୍ଦର ଚିତ୍ର ରହିଛି । ପୁସ୍ତକଟି ଆଦୃତ ହେବାର ଆଶା ।

**ମୋ ଆଶା-- ସମ୍ପାଦକ- ସୁମନ୍ତ ମହାରଣା,** ପାଟପୁର, ନିମାପଡ଼ା, ପୁରୀ-୭୫୨୧୦୬ । ମୂଲ୍ୟ- ୧୫ ଟଙ୍କା । ଦୂରଭାଷ- ୯୮୬୧୩୪୨୪୩୭ ।

କ୍ରାଉନ୍ ୧/୪ ଆକାରର ତ୍ରୈମାସିକ ପତ୍ରିକାଟି ଆମର ହସ୍ତଗତ ହୋଇଛି । ଏଥିରେ ରହିଛି-ବିଶିଷ୍ଟ ଲେଖକଙ୍କର ଗଳ୍ପ, କବିତା, ଜ୍ଞାନବିଜ୍ଞାନ ସମ୍ବନ୍ଧୀୟ ବିଷୟବସ୍ତୁ, ଜୀବନୀ, ଚିତ୍ରଧନ୍ଦା, ଶିଶୁ-ପ୍ରତିଭାଙ୍କର ପରିଚୟ । ପିଲାଙ୍କର ହାତଅଙ୍କା ଚିତ୍ର ଇତ୍ୟାଦି ଇତ୍ୟାଦି । ରଙ୍ଗିନ ପ୍ରଚ୍ଛଦରେ ପିଲାଟିର ଦୋଳି ଖେଳିବାର ଦୃଶ୍ୟ ଆକର୍ଷଣୀୟ । ପତ୍ରିକାଟିର ପ୍ରଚାର ଓ ପ୍ରସାର କାମନା କରୁଛୁ ।

( ୫୪ ପୃଷ୍ଠାର ଅବଶିଷ୍ଟାଂଶ )

କ୍ଷେପଣାସ୍ତ୍ରର ସଫଳ ପରୀକ୍ଷଣ । ଏହାଦ୍ୱାରା ଆମେରିକା, ରୁଷ, ଚୀନ ପରେ ଭାରତର ଚତୁର୍ଥ ରାଷ୍ଟ୍ର ଭାବେ ପ୍ରତିରକ୍ଷା ସାମର୍ଥ୍ୟ ହାସଲ ।

୨।୪- ପାକିସ୍ଥାନର ଅସ୍ତ୍ରବିରତି ଉଲ୍ଲଙ୍ଘନ ପରେ ଭାରତ ସୈନ୍ୟବାହିନୀ ଦ୍ୱାରା ପାକିସ୍ଥାନର ୭ଟି ଶିବିର ଧ୍ୱଂସ ଓ ୩ ଜଣ ପାକ୍ ସୈନ୍ୟ ନିହତ ।

୬।୪- ଫିଫା କାଉନ୍‌ସିଲର ସଦସ୍ୟଭାବେ ନିର୍ବାଚିତ ହୋଇଛନ୍ତି ଭାରତୀୟ ଫୁଟବଲ ମହାସଂଘ ସଭାପତି ପ୍ରଫୁଲ୍ଲ ପଟେଲ ।

୯।୪- ବରିଷ୍ଠ କଂଗ୍ରେସ ନେତା ତଥା କେରଳ ଇତିହାସରେ ସର୍ବାଧିକ ସମୟ ରହି ରେକର୍ଡ଼ ଅଧିକାରୀ କେ.ଏମ୍. ୮୬ ବର୍ଷରେ ପରଲୋକ । ୧୯୬୫ରୁ ସେ ପାଲା ନିର୍ବାଚନ ମଣ୍ଡଳୀରୁ ୫୨ ବର୍ଷ ଧରି ବିଧାୟକ ଥିଲେ ।

**ବିଦେଶ ଖବର**

୧୯।୩- ନରୱେ ଏକାଡେମୀ ଅଫ୍ ସାଇନ୍ସ ଆଣ୍ଡ ଲିଟରେଚର ପକ୍ଷରୁ ଚଳିତ ବର୍ଷର ନୋବେଲ ପୁରସ୍କାର ପ୍ରଥମ ମହିଳା ବିଜୟିନୀ ହୋଇଛନ୍ତି ଆମେରିକାର ଗଣିତଜ୍ଞ କାରେନ୍ ଆଲେନ୍‌ବେକ୍ ।

୧୦।୪- ଇସ୍ରାଏଲ୍‌ରେ ପ୍ରଧାନମନ୍ତ୍ରୀ ବେଞ୍ଜାମିନ୍ ନେତ୍ୟାନ୍ୟାହୁଙ୍କ ଦଳର ସଂଖ୍ୟାଗରିଷ୍ଠତା ହାସଲ । ରେକର୍ଡ଼ ପଞ୍ଚମ ଥର ପାଇଁ ସେ ପ୍ରଧାନମନ୍ତ୍ରୀ ଭାବେ ନିର୍ବାଚିତ ।

୧୧।୪- ସୁଦାନର ରାଷ୍ଟ୍ରପତି ଓମାର ଅଲ ବାସିର ସେନାଦ୍ୱାରା କ୍ଷମତାଚ୍ୟୁତ ପରେ ଗିରଫ । ମିଲିଟାରୀ ପରିଷଦଙ୍କର ଦୁଇବର୍ଷ ପାଇଁ ଶାସନ କ୍ଷମତା ହାସଲ ।

୧୩।୪- ପ୍ରଖ୍ୟାତ ବ୍ରିଟିଶ୍ ହାସ୍ୟାଭିନେତା ଇଆନ୍ କଠାନିଟୋଙ୍କର ୬୦ ବର୍ଷରେ ପରଲୋକ ।

୨୧।୪- ଶ୍ରୀଲଙ୍କାର ରାଜଧାନୀ କଲମ୍ବୋରେ ୩ଟି ପ୍ରମୁଖ ଚର୍ଚ୍ଚ ଓ ବିଳାସପୂର୍ଣ୍ଣ ହୋଟେଲରେ ଉଗ୍ରବାଦୀଙ୍କର କ୍ରମାଗତ ୮ଟି ବିସ୍ଫୋରଣରେ ୨୯୦ ମୃତ ଓ ୫୦୦ ଆହତ । ଜରୁରୀ ପରିସ୍ଥିତି ଜାରି ।



## ଶବ୍ଦଧନ୍ଦା ମଇ-୨୦୧୯

ଶ୍ରୀ ବିଧୁର କୁମାର ଦାଶ

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ ।୦୫ ।୨୦୧୯
୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | ୨ | | ୩ | * | ୪ | |
| ୫ | | * | ୬ | ୭ | | * |
| ୮ | | ୯ | * | | * | ୧୦ |
| | * | ୧୧ | | | ୧୨ | |
| ୧୩ | ୧୪ | | * | * | ୧୫ | |
| * | ୧୬ | | * | ୧୭ | * | |
| ୧୮ | | | * | ୧୯ | | |

### ସୂଚନା

**ବାମରୁ ଡାହାଣ--** ୧ । ବଡ଼ ଠାକୁର (୪), ୪ । ଦୁର୍ଜନ (୨), ୫ । ଅଣ୍ଡିରା କୁକୁଡ଼ା (୨), ୬ । ପେଷଣ (୩), ୮ । ପ୍ରାଚୀନ ନଦୀ ବିଶେଷ (୩), ୧୧ । ଭୁବନେଶ୍ୱରର ଏକ ସ୍ଥାନ (୫), ୧୩ । ରଥଚକ (୩), ୧୫ । ଦିନ (୨), ୧୬ । ହତ୍ୟା (୨), ୧୮ । କପୋତ ଜାତୀୟ ପକ୍ଷୀ (୩), ୧୯ । ବୃକ୍ଷବିଶେଷ (୩) ।

**ଉପରୁ ତଳ--** ୧ । କଟକ ନିକଟସ୍ଥ ଏକ ଛୋଟ ସହରାଞ୍ଚଳ (୫), ୨ । ଓଡ଼ିଶାର ଏକ ଜିଲ୍ଲା (୩), ୩ । ବାର (୨), ୪ । ଶାଗବିଶେଷ (୨), ୭ । କରୁଣ ସଂଗୀତ (୩), ୯ । ବିଷ୍ଣୁ (୫), ୧୦ । ସମୁଦ୍ରରୁ ବାହାରୁଥିବା ଅଗ୍ନିବିଶେଷ (୫), ୧୨ । ସିଂହାସନ (୨), ୧୪ । ଭୂସମ୍ପତ୍ତି (୩), ୧୭ । ବନ୍ଧୁ (୨) ।

*–ଧଣ୍ଡାମୁଣ୍ଡା, ବଲାଙ୍ଗୀର-୨୮*

---

**ଅପ୍ରେଲ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ପ୍ରଜାପତି, ୫ । ସୂତ, ୬ । ଝାସ, ୭ । ଦାଉ, ୮ । ନକଲ, ୯ । ଖାଉଟି, ୧୧ । ସରସିଜ, ୧୪ । ଜବା, ୧୫ । ବତି, ୧୭ । ଲପନ ।

**ଉପରୁ ତଳ--** ୧ । ପ୍ରସୂନ, ୨ । ଜାତକ, ୩ । ପଝାଲ, ୪ । ପଉଟି, ୧୦ । ଉଜଳା, ୧୧ । ସବାଲ, ୧୨ । ରବ, ୧୪ । ସିତି, ୧୬ । କେତୁ ।

---

**ଗତମାସର ଠିକ୍ ଉତ୍ତରଦାତା– ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼

**(ଶବ୍ଦଧନ୍ଦାର 'ଉତ୍ତର' ଚିଠିଗୁଡ଼ିକ ବହୁ ବିଳମ୍ବରେ ଆସୁଛି, ତେଣୁ ଆମେ ଠିକ୍ ସମୟରେ ଅନେକଙ୍କର ନାମ ପ୍ରକାଶ କରିପାରୁ ନାହୁଁ । ସେଥିପାଇଁ ଆମେ ଦୁଃଖିତ ।)**

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୧୮।୩- ଲାଞ୍ଜିଗଡ଼ସ୍ଥିତ ବେଦାନ୍ତ କାର୍ଯ୍ୟାଳୟରେ ସୁରକ୍ଷାକର୍ମୀ ଓ ବିସ୍ଥାପିତଙ୍କ ମଧ୍ୟରେ ଗଣ୍ଡଗୋଳ ଯୋଗୁଁ ୨ ମୃତ ଓ ୫୦ ଆହତ ।

୧୯।୩- ରାଜ୍ୟର ବ୍ୟାଟସମ୍ୟାନ ଓ ୱିକେଟ୍ ରକ୍ଷକ କାଦମ୍ବିନୀ ମହାକୁଡ଼ଙ୍କର ଓଡ଼ିଶା କ୍ରିକେଟ୍ ଆସୋସିଏସନ୍‌ରୁ ଅବସର ଗ୍ରହଣ ।

-- ଦେଶପାଇଁ ଜୀବନ ଉତ୍ସର୍ଗ କରିଥିବା ଦୁଇଜଣ ଓଡ଼ିଆ ଯବାନ ବୀର ସିପାହୀ ବିଜୟ କୁମାର ଏବଂ ସି.ଆର୍.ପି.ଏଫ. କନେଷ୍ଟବଳ ପ୍ରଦୀପ କୁମାର ପଣ୍ଡାଙ୍କୁ କୀର୍ତ୍ତିଚକ୍ର ସମ୍ମାନ ପ୍ରଦାନ ।

୨୦।୩- ରାଜ୍ୟର ପ୍ରଥମ ଲୋକାୟୁକ୍ତ ଅଧକ୍ଷ ଭାବେ ଗୌହାଟି ହାଇକୋର୍ଟର ଅବସରପ୍ରାପ୍ତ ମୁଖ୍ୟ ବିଚାରପତି ଅଜିତ ସିଂହଙ୍କର ଦାୟିତ୍ୱଗ୍ରହଣ ।

୨୯।୩- ୨୦୧୮-୧୯ ପାଇଁ ଲଳିତ କଳା ଏକାଡେମୀ ପୁରସ୍କାର ରାଜ୍ୟରୁ ଭାସ୍କର୍ଯ୍ୟ ଶିଳ୍ପୀ ଚନ୍ଦନ କୁମାର ସାମଲ ଓ ଚିତ୍ରଶିଳ୍ପୀ ଜୟା ଜେନାଙ୍କୁ ପ୍ରଦାନ ।

୩୦।୩- ସୁପ୍ରିମକୋର୍ଟର ପୂର୍ବତନ ବିଚାରପତି ଜଷ୍ଟିସ୍ ଦୀପକ୍ ମିଶ୍ରଙ୍କୁ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ପକ୍ଷରୁ ସମ୍ମାନସୂଚକ ଡକ୍ଟର ଅଫ୍ ଲ' ଉପାଧି ପ୍ରଦାନ ।

୧।୪- ନାଟ୍ୟକାର ଓ ପ୍ରବକ୍ତା ତଥା ଓଡ଼ିଆ ନାଟକର ସ୍ରଷ୍ଟା ପ୍ରଫେସର କାର୍ତ୍ତିକ ଚନ୍ଦ୍ର ରଥଙ୍କର ୭୦ ବର୍ଷରେ ପରଲୋକ ।

୭।୪- ଓଡ଼ିଆ ସଂଗୀତ ଜଗତର ଲବ୍ଧପ୍ରତିଷ୍ଠ ସଂଗୀତକାର ବାସୁଦେବ ରଥଙ୍କର ୬୮ ବର୍ଷରେ ପରଲୋକ ।

-- ୧୦ଦିନ ଧରି ଚାଲିଥିବା କଟକର ବାଣିଜ୍ୟମେଳା ଉଦ୍‌ଯାପିତ । ଏଥିରେ ୪୫୦ଟି ଷ୍ଟଲ୍ ଖୋଲାଯାଇଥିଲା ।

--ଓଡ଼ିଆ ଚଳଚ୍ଚିତ୍ର ଅଭିନେତା କେଶବ ଚନ୍ଦ୍ର ଶତପଥୀଙ୍କର ୯୪ ବର୍ଷରେ ପରଲୋକ । ସେ ୧୯୭୧ ମସିହା ପର୍ଯ୍ୟନ୍ତ ଘରସଂସାର, ଭାଇଭାଉଜ, ସଂସାର ଇତ୍ୟାଦି ଅନେକ ଚଳଚ୍ଚିତ୍ରରେ ନିରବଚ୍ଛିନ୍ନଭାବେ ଅଭିନୟ କରିଥିଲେ ।

୯।୪- ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଜ୍ୟୋତିର୍ବିଦ୍ ନିମାଇଁ ବାନାର୍ଜୀଙ୍କର ୭୩ ବର୍ଷରେ ପରଲୋକ ।

୧୦।୪- ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ କବି, କଥାକାର ତଥା ନାଟ୍ୟକାର ହରିହର ମିଶ୍ରଙ୍କୁ ବିଷୁବ ପୁରସ୍କାର ପ୍ରଦାନ ।

୧୪।୪- ଲୋକପ୍ରିୟ ସଂଗୀତ ପ୍ରତିଭା, ସ୍ୱର ସଂଯୋଜକ, ସଂଗୀତ ସାଧକ ରାଖାଲ ମହାନ୍ତିଙ୍କର ୮୭ ବର୍ଷରେ ପରଲୋକ ।

୧୫।୪- ଭାରତୀୟ ଶାସ୍ତ୍ରୀୟ ନୃତ୍ୟ କ୍ଷେତ୍ରରେ ଅବଦାନ ପାଇଁ କୁଚିପୁଡ଼ି ନୃତ୍ୟାଙ୍ଗନା ଶାଲୁ ଜିନ୍ଦଲଙ୍କୁ 'ଏକଲବ୍ୟ ସମ୍ମାନ-୨୦୧୯' ପ୍ରଦାନ ।

୧୮।୪- ତାଳଚେରର ଅଧିଷ୍ଠାତ୍ରୀ ମା' ହିଙ୍ଗୁଳା ଯାତ୍ରା ଏବଂ ୧୭ତମ ହିଙ୍ଗୁଳା ଲୋକ ମହୋତ୍ସବ ୪ ଲକ୍ଷ ଭକ୍ତଙ୍କ ସମାଗମରେ ଉଦ୍‌ଘାଟିତ । ଏହା ୯ ଦିନ ପର୍ଯ୍ୟନ୍ତ ଚାଲିବ ।

୨୦।୪- ପାଟକୁରା ଆସନରୁ ବିଜେଡି ପ୍ରାର୍ଥୀ ତଥା ବର୍ଷିୟାନ୍ ରାଜନେତା ବେଦ ପ୍ରକାଶ ଅଗ୍ରୱାଲଙ୍କର ୮୨ ବର୍ଷରେ ପରଲୋକ । ତାଙ୍କର ମୃତ୍ୟୁରେ ପାଟକୁରା ବିଧାନସଭା ନିର୍ବାଚନକୁ ସ୍ଥଗିତ ରଖାଯାଇଛି ।

-- ଓଡ଼ିଶା ଚେସ୍ ଆସୋସିଏସନର ଉପସଭାପତି ଚେସ୍ ଗୁରୁ ଅରାତି ବିଜୟ ମହାନ୍ତିଙ୍କର ୭୪ ବର୍ଷରେ ପରଲୋକ ।

୨୧।୪- ଲେଖିକା, ସମାଜସେବୀ ତଥା 'ସହକାର'ର ସମ୍ପାଦିକା ରମା କରଙ୍କର ୮୪ ବର୍ଷରେ ପରଲୋକ ।

## ଭାରତ ଖବର

୧୮।୩- ଗୋଆର ମୁଖ୍ୟମନ୍ତ୍ରୀ ଭାବେ ପ୍ରମୋଦ ସାୱନ୍ତଙ୍କ ଶପଥଗ୍ରହଣ ।

୨୦।୩- ପଞ୍ଜାବ ନ୍ୟାସନାଲ ବ୍ୟାଙ୍କର ବହୁ କୋଟି ଠକେଇ ଅଭିଯୋଗର ମୁଖ୍ୟ ଅଭିଯୁକ୍ତ ନିରବ ମୋଦୀ ଲଣ୍ଡନଠାରେ ଗିରଫ ।

୨୩।୩- ବିଚାରପତି ପିନାକୀ ଚନ୍ଦ୍ର ଘୋଷଙ୍କର ଦେଶର ଲୋକପାଳ ଭାବେ ଶପଥଗ୍ରହଣ ।

୨୭।୩- ଅନ୍ତରୀକ୍ଷ ପ୍ରତିରକ୍ଷା କ୍ଷେତ୍ରରେ ଭାରତର ଇତିହାସ ସୃଷ୍ଟି । ଭାରତୀୟ ବୈଜ୍ଞାନିକ ସଫଳତାର ସହ ଉପଗ୍ରହ ନିରୋଧି

( ଅବଶିଷ୍ଟାଂଶ ୫୨ ପୃଷ୍ଠାରେ)

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597